ପ୍ରକାଶକ

ଓଡ଼ିଶା ବୁକ୍ ଏମ୍ପୋରିୟମ

କଟକ


୧ମ ମୁଦ୍ରଣ ୧୯୪୫ ସାରସ୍ୱତପ୍ରେସ—୧୦୦୦

୨ୟ ମୁଦ୍ରଣ ୧୯୪୭ ରା: ର: ପ୍ରେସ—୨୦୦୦

୩ୟ ମୁଦ୍ରଣ ୧୯୪୮ ସତ୍ୟବାଦୀ ପ୍ରେସ—୨୦୦୦

୪ର୍ଥ ମୁଦ୍ରଣ ୧୯୪୮ ରା: ର: ପ୍ରେସ—୨୦୦୦

୫ମ ମୁଦ୍ରଣ ୧୯୪୯ ରା: ର: ପ୍ରେସ—୨୦୦୦

ମୁଦ୍ରାକର :—

ଶ୍ରୀ ଲକ୍ଷ୍ମୀଧର ଗରାବଡ଼ୁ

ଶ୍ରୀରାଧାରମଣ ପ୍ରେସ

କଟକ

ଦା: ୬ ଅଣା

ଅତିରିକ୍ତ ଦଶ ପଇସା

'ପଦେ ଅଧେ······

'ଉତ୍କଳିକା' ମୋର ବହୁ ଦିନର ସ୍ୱପ୍ନ । ଆଜି ଏତେ ଦିନେ ସହୃଦୟ ପାଠକପାଠିକାମାନଙ୍କ ଆଗରେ ଆତ୍ମପ୍ରକାଶ କରିଛି ମାତ୍ର; ତଥାପି ଏହା ଅସମାପିକା ।

ମୁଁ ଏଥିରେ ଯେଉଁ କଥାବସ୍ତୁର ବ୍ୟବହାର କରିଅଛି, ତହିଁରେ ଐତିହାସିକ ସତ୍ୟ ଅଛି । ମହାବୀର ନେପୋଲିୟନ ତାକୁଇ କହିଛନ୍ତି ଇତିହାସ—"Fables that have been agreed upon" ଉତ୍କଳର ପୁରପଲ୍ଲୀ, ଲୋକମୁଖରେ ଏହି ଧରଣର କେତେ ଯେ କଥା ଓ ଲେଖା ବିକ୍ଷିପ୍ତ ରହିଛି ତାର ଇୟତ୍ତା ନାହିଁ । ସେ ସବୁର ସନ୍ଧାନ ଓ ଉଦ୍ଧାର ଆଜିର ପ୍ରତ୍ୟେକଙ୍କର ଲକ୍ଷ୍ୟ । ତାହାହେଲେ ଆଜି ଏ ଜାତି ଆଗରେ ଠିଆହୁଅନ୍ତା ଏକ ଅଖଣ୍ଡ ଅଭିନବ ଉତ୍କଳ······ ·· ···

'ଉତ୍କଳିକା' ଅନେକଙ୍କର ପ୍ରାଣରେ ନୂତନ ଦ୍ୟୋତନା ଆଣିପାରିଲେ ମୋର ସ୍ୱପ୍ନ ସତ୍ୟ ହେବ ବୋଲି ଭାବୁଛି ।

ବି. ଗଡ଼ନାୟକ
ପୁନିଆଁ, କଟକ

## ଆଉ ପଦେ

ଉତ୍କଳିକା ଯେଉଁ ଉଦ୍ଦେଶ୍ୟରେ ଲେଖା ଯାଇଥିଲା, ତା କାହିଁତ୍ ସଫଳ ହୋଇଚ ।

ରା· ଗଡ଼ନାୟକ

## —ସୂଚି—

## ବଣ୍ୟ ଜୀବନ ପଥେ

ଘନ ଅମ୍ବୁଦେ ଭରି ଉଠିଅଛି ପୂର୍ବର ଆକାଶ ପଥ
ଟିପ ଟିପ ଟିପ ବିନ୍ଦୁ-ବରଷା ଲାଗିଅଛି ଅବିରତ ।
ସିନ୍ଧୁର ବୁକେ ବିପ୍ଳବ ଢୋଳ ଜାଗି ଉଠୁଅଛି ଝଡ଼,
ସ୍ୱାର୍ଥ-ଦନ୍ତ-ବାଥି ମାଦକତା ପିଇ ଗର୍ଜ୍ଜୁଛି ମରମର ।
ସ୍ୱପ୍ନର ସୁହାଗେ ମାତ
ରୁଗ୍ଣ ବିଳାସ ଶୀତ ଶୀଳାତରେ ଥରୁଛି ଦେଉଳ ଛାତ ।

•

ପୁଷ୍ପର ଗୋଟିଏ କ୍ଷୁଦ୍ର ନିବାସେ କେତେକ ବନ୍ଧୁ ପାଶେ,
ଶାନ୍ତର ଗୋପ- ବନ୍ଧୁ ସେଧାନ କହିଲେ ସଜଳ ଭାଷେ;
"ଦେଖୁଅଛ ତୁମେ ଶଙ୍କା ନାଶ ଲାଗିଅଛି ନାନାମତେ
ଭଲ ହେବାର ତ ଲକ୍ଷଣ କାହିଁ ଦେଖା ଯାଉନାହିଁ ମତେ ।
ଆଶା ରହୁନାହିଁ ଆଉ,
ଅଜ୍ଞାତେ ମୋର ଅନ୍ତରେ କିବା ଲାଗୁଅଛି ଗୁଣ୍ଡ ଗୁଣ୍ଡ ।"

୨

"ତୁମେ କି କରିବ ? ଜଗତେ ମଣିଷ   ଚେଷ୍ଟା କରଇ ସିନା
ଫଳରେ ତାହାର   ଅଧିକାର ନାହିଁ   ଦୈବ ଶକତି ବିନା ।
ଇଙ୍ଗିତେ ଯାର   ବିଶ୍ୱଭୁବନ   ହେଉଅଛି ଆତଯାତ
ନିଶ୍ଚୟ ତୁମ   ମନର ବେଦନା   ବୁଝିବେ ଜଗନ୍ନାଥ ।
ତୁମ ଭଳି ଲୋକ ଯେବେ
ସବୁ ଜାଣୁ ଜାଣୁ ଏପରି ହୋଇବ ଆମେ କି କରିବୁ ତେବେ ?"

ନିର୍ମ୍ମମ ଏକ   ସମ୍ବାଦ ତେବେ   ମିଳିଲା ଅକସ୍ମାତ
କୁଶଭଦ୍ରାର   ବକ୍ଷେ ଜାଗିଛି   ବନ୍ୟାର ଉତ୍ପାତ ।
ପ୍ରଳୟର ସ୍ରୋତେ   ଭାସି ଯାଇଅଛି   ଶତ ଶତ ଘରଦ୍ୱାର
ପ୍ରଳୟର ସ୍ରୋତେ   ବୁଡ଼ି ଯାଇଅଛି   ଶତ ଶତ ପରିବାର
ଗୋପ ଅଞ୍ଚଳ ଧରି
ଉଠୁଛି କାତର   ହାହାକାର ରବ   ଗଗନ ମଥିତ କରି ।

"ଉତ୍କଳ ପରେ   ନିୟତିର ଏ ତ   ନିଷ୍ଠୁର ପରିହାସ ।"
ବକ୍ତାଭାବେ ଜଣେ   ଜଣାଇଲେ ତହୁଁ   ହୃଦୟର ଉଚ୍ଛ୍ୱାସ ।
"ପ୍ରଳୟଙ୍କର   ବନ୍ୟା ମଡ଼କ   ଦୁର୍ଭିକ୍ଷର ଦାଉ
ବରଷ ବରଷ   ଗ୍ରାସି ଦେଉଅଛି   ଚନ୍ଦ୍ରମାରେ କି ରାହୁ ।
ଶକ୍ତି ଯାଉଛି ତୁଟି
ଅନ୍ୟ ଦେଶର   ସଙ୍ଗେ ଏ ଅଜ୍ଞ   କେମନ୍ତେ ପାରିବ ଉଠି ?"

ଅପର କହିଲେ, "ଜ୍ଞାନ ଧନ ଯାର ଥାଏ ସଂସ୍କୃତି ଦେଇଛି
ଦର୍ପଭରେ ଏ ଉଠିଥିଲା ଦିନେ ବସୁନ୍ଧରାର ତଳେ ।
ବିଜୟ ପତାକା ଉଡ଼ାଉଥିଲା ଏ ମୁକ୍ତ ଗଗନ ବୁକେ
କୈଳି ଗୀତିକା ଉଠାଉଥିଲା ଏ ଧାତ୍ରୀ ଧରାର ମୁଖେ ।
ଅଭିଶପ୍ତ ଏ ଦେଶ
ଧର୍ମାନ୍ଧଙ୍କ ଦିନେ ଏହିପର ସିନା ହୋଇଗଲା ନିଃଶେଷ ।"

ଶୁଣୁଥିଲେ ଗୋପବନ୍ଧୁ ମଉନେ ବାହାରେ ସବୁ ତ କି ଜଡ଼ !
ଆଜି ଦିନର ଏ ଝଂଡଠାରୁ ବଳି ଅନ୍ତରେ ଧଇ ଝଡ଼ !
ସମ୍ମୁଖରେ ନୟନରୁ ଢାଳି ଅଶ୍ରୁ ଧାର ଦୁଇ
କାତର କଣ୍ଠେ ଭାଷିଲେ ବଚନେ, "ବାହାରିଲି ଏବେ ମୁହିଁ ।
ତୁମେ ଏବେ ମୋର ସାହା,
ଲାଗିଲା ତୁମକୁ ବେଗୀଠିର ଭାବ ମୁଁ ମୋର ଧରୁଛି ରାହା ।"

"କାହିଁ ଯିବ ତୁମେ" ପ୍ରଶ୍ନ ଉଠିଲା, "ବାହାରୁଛ ଏବେ କାହିଁ ?"
"ବନ୍ୟାଞ୍ଚଳେ— ବନ୍ୟା-ପୀଡ଼ିତ ଜନତାର ସେବା ପାଇଁ ।"
"ଏକାଳ ପୁଣି ଯୋଗେ ବନ୍ଧୁଜନ୍ମ ହୋଇଛି ଗଣ୍ୟାଗତ,
ଏଥକାବେଳକୁ ଦିଶୁଛି ତୁମକୁ ଜନତା-ସେବାର ପଥ ।
ଅଦ୍ଭୁତ ଏ ଚରିତ୍ର,
ମନେମନେ ଏ ଚିନ୍ତା କପର ଲାଭ ଅଛି ମନ୍ଥାର !"

"ଗୃହରେ ଜୀବନ ପରିଧିରେ ରତ ସଙ୍କୀର୍ଣ୍ଣ-କାରାପୁରୀ
ବାହାରେ ଅଛୁ ଯେ ବିପୁଳ ଜୀବନ ମୁଁ ତ ନ ପାରିବି ଭୁଲି ।
ଏକର ସକାଶେ ଅନେକର ଡାକ ମୁଁ ତ ନ ପାରିବି ଏଡ଼ି,
ଛନ୍ଦ ନା ଏବେ ଚରଣେ ମୋହର ଅନ୍ଧ ମମତା-ବେଡ଼ି ।
ଦିଅ ଛାଡ଼ିଦିଅ ମତେ
ଚଳିଯାଏ ଆଜି ଚଳିଯାଏ ମୁହିଁ ବିଶ୍ୱଜୀବନ-ପଥେ ।"

ସହସା ଅପର କକ୍ଷକୁ ଯାଇ ପ୍ରିୟ ପତ୍ନୀର ପାଶେ
ବୁଝାଇ କହିଲେ ମନର ବାସନା ପ୍ରାଣର ଆକୁଳ ଭାଷେ ।
ବୁଝିବ କି କେବେ ଉନ୍ମାଦିନୀ ? ବୁଝିବ କି କେବେ ନାରୀ ?
ଅନ୍ତର ସେବେ ଅଶ୍ରୁ ଆବେଗେ ଫାଟି ପଡ଼ୁଥାଏ ଖାଲି ।
"ଯିବା ପାଇଁ ଯଦି ଚାହଁ,
ମୋତେ ଆଗ ମାର ସନ୍ତାନଟିରେ ମାରିଦେଇ ଚଳିଯାଅ ।"

ଜୀବନର ମହା— ମାୟା ସମ୍ମୁଖେ ବଜ୍ର ସାଧନା ସାଧି
ନିର୍ବାକ ହୋଇ ରହିଗଲେ ତହିଁ ବଧିର ବିଶ୍ୱବାଦୀ ।
ଛଳ ଛଳ କରି ଅଟିଟିଏ ଚୁହିଁ ପୀଡ଼ିତ ପୁତ୍ର ମୁଖେ
କ୍ଷିପ୍ର ଚରଣେ ବାହାରି ପଡ଼ିଲେ ମୁକ୍ତ ଧରଣୀ ବୁକେ ।
ଶୁଭୁଥିଲା ପଛଆଡ଼େ,
"କେଡ଼େ ଅଦ୍ଭୁତ ମଣିଷ ଏ ସତେ ଜନମିଛି ସଂସାରେ ।"

୫

କ୍ଳାନ୍ତ ଶରୀର, ମଳିନ ବଦନ, ପଞ୍ଚ ଦିବସ ପରେ,
ବନ୍ୟା ପୀଡ଼ିତ ଅଞ୍ଚଳୁଁ ଫେରି ବାହୁଡ଼ିଲେ ପୁଣି ଘରେ,
ଅଶ୍ରୁ ଲୁହାଇ ନୟନରୁ ଦେଇ ହୃଦୟୁ ରକ୍ତ ଭରି
ପରୁଷ ବଚନେ ପଚାରି ଉଠିଲେ ବାଧୁରୀ ବନ୍ଧୁ ହସି
"ଆଜ କି ଦେଖିବ ଏବେ ?
ବାସନା ତୁମର ପୂର୍ଣ୍ଣ ହେଲା ତ ? ଆଉ କି ଇଚ୍ଛା ତେବେ ?"

ବିଶ୍ୱ-ଦରଦୀ ପାଷାଣ କଠୋର ଧୈର୍ଯ୍ୟ ସାଧନ ଭରେ
ମରମ ତଳର ଉଦ୍‌ଗତ ଲୁହ ଗୁପିନେଲେ ମରମରେ ।
କରୁଣ ଅଧରେ ସ୍ମିତ ବିକଶାଇ ଭାଷିଲେ ନବୀନ ଭାବ,
"ଲୁହ ପୋଛୁ ଏବେ ଦେଖି ନିଅ ସଖି ! ଅଭିନବ ଏଇ ଲାଭ ।
ଗୋଟିଏ ପୁତ୍ର ଦେଇ
ହୃଦୟେ ମୋହର ଶତ ପୁତ୍ର ମୁଁ କୁଢ଼ାଇ ଆଣିଚି ଏଇ ।"

# ସ୍ମରଣିକା

୧

ମଣିମୟ ଅଟ୍ଟାଳିକା ପରେ
ପୁଲକିତ ଚଇତାଳି ରାତେ;
ମହାରାଜା କପିଳେନ୍ଦ୍ର ଦେବ
ବସିଥିଲେ ମହାରାଣୀ ସାଥେ ।

ସ୍ନିଗ୍ଧ କରି ନୈଶ ସମୀରଣ
ମୁଗ୍ଧ କରି ଫେନିଳ ଜୋଛନା,
ବାଉଁଶୀର ବୁକୁ ଉଚ୍ଛୁଳାଇ
ଖୋଲୁଥିଲେ ମଦିର ମୂର୍ଚ୍ଛନା ।

ଶୁଣି ଶୁଣି ବିମୁଗ୍ଧ ମହିଷୀ
ଅତର୍କିତେ ଉଠିଲେ ଉଛାଳି,
"ପଶୁବବି ନାଚ ନାଚ ଭାବେ
କେବେହେଲେ ପାରେ ନା ପଶୁର ।"

ହସି ହସି ଭାଷିଲେ ରାଜେନ୍ଦ୍ର
ପରକାଶି ମରମର ଭାଷା
"ଏଇକ୍ଷଣି କହୁନାହଁ କପାଁ
କି ଅବା ଯେ ତୁମର ଜିଜ୍ଞାସା ?"

"ସେଇ ଯେଉଁ ବଇଁଶୀ ଖଣ୍ଡିକ
ବଜାଉଚ," ପଚ୍ଚାରିଲେ ରାଣୀ,
ରକ୍ତାରୁଣ ଚଞ୍ଚଳ ଅଧରେ
ଚହଟାଇ ସୁହାଗର ବାଣୀ

"ବାଉଁଶର ବଇଁଶୀ ଖଣ୍ଡିକ
ହୋଇଲଣି ଜୀର୍ଣ୍ଣ ପୁରାତନ;
ତଥାପି ତ ଛାଡ଼ିପାରୁ ନାହିଁ
ସତେ ଯେଉଁ ପୀରତର ଧନ !

ଉତ୍କଳର ଗଜପତି ତୁମେ,
ତବ ପୁରେ କ ଅବା ଦୁର୍ଲ୍ଲଭ,
କେଉଁ କଥା ଅପୂରବ ଭଲ ?
ନାହିଁ ଅବା କେଉଁ ବଇଭବ !

ରାଜହସ୍ତେ ସୁନାର ବଇଁଶୀ
ହେଲେ ଯିନା ଦଶନ୍ତା ଶୋଭନ,
ଉତ୍କଳର ରାଜେଶ୍ୱର ହୋଇ,
ତହିଁ କବା ବଳୁ ନାହିଁ ମନ ?"

"ବଲୁ ନାହିଁ ମନ ମୋର ରାଣୀ !
କେବେହେଲେ ନ ବଳିବ ମନ,
ଏଇ ମୋର ବାଉଁଶୀ ଖଣ୍ଡିକ
ଜୀବନର ଅତି ପ୍ରିୟଧନ ।

ପୂର୍ବେ ଯେବେ କିଶୋର ବୟସେ
ଗୋ-ଚାରଣ କରୁଥିଲି ମୁହିଁ
ଧେନୁପଲ ପଛେ ପଛେ ଧାଇଁ
ଘୂରୁଥିଲି ବନ-ବନ-ଭୂଇଁ;

ସେତେବେଳେ ଅଗୋ ପ୍ରିୟତମା !
ସେତେବେଳେ ଏଇ ଖଣ୍ଡି ମୋର
କରୁଥିଲା ପ୍ରାଣର ସଙ୍ଗାଳି
ହେଉଥିଲା ଆନନ୍ଦେ ବିଭୋର ।

ଥକିଗଲେ ପାଦ ଦୋ'ଟି ମୋର
ବାଉଁଶିଟି ରଖି ମୋର ଓଷ୍ଠେ
ଗୋଷ୍ଠୁହରା ଗାଭୀଟିରେ ମୋର
ଡାକି ଆଣି ପାରୁଥିଲି ଗୋଷ୍ଠେ ।"

"ଆଜ ଅଜ ଗୋଗ୍ଟରଣ ତୁମେ
କରୁ ନା ତ ବଲ ବନେ ତୁଲ୍,
କେବଳ ଏ ବଇଁଶୀ ବଜାଇ
ଭୁଞ୍ଜୁନାହଁ ଜୀବନ ମାଧୁରୀ !

ଗୋମ୍ପ୍ରନ୍ତ୍ରୀ ଗାହ୍ରୀଷ୍ଠିରେ ଅବା
ଅଜ ତୁମ୍ଭେ ଡାକୁନାହଁ ଅଜ
ଅଜ ତୁମେ ଉତ୍କଳ ସମ୍ରାଟ
ଅଜ ତୁମେ ବୀର ମହାବାହୁ ।

ସୁବିଶାଳ ବଇଭବ ଭବ
ସୁବିପୁଳ ମାଣିକ୍ୟ ରତନ
ଦିଗ୍‌ବିଦିଗେ ଦେଶ ଦେଶାନ୍ତରେ
ଉଡ଼ାଉଚ ଗୌରବ କେତନ ।

ଏତେ ଧନ ଏତେ ଗଉରବ
ଦେଶେ ଦେଶେ ଏତେ ସନମାନ
ବାଉଁଶର ବଇଁଶୀ ଖଣ୍ଡିକ
ତୁମ ପକ୍ଷେ ନୁହେ ଅପମାନ ?"

୫

"ଅପମାନ ଜ୍ୱଳେ ଅଗୋ ରାଣୀ
ଏ ଯେ ମୋର ସମ୍ମାନର ମୂଳ,
ଜାଣ ଦେଖି ସୁନାର ବଇଁଶୀ
କାହିଁ ହେବ ଏହା ସଙ୍ଗେ ତୁଳ ?

ଦୈନ୍ୟ-କଳଙ୍କ ଅତୀତର ସ୍ମୃତି
ଅବିରତ କର ଅପାଶୋର,
ରକ୍ଷିତ ଏ ବଇଁଶୀ ଖଣ୍ଡିକ
ପ୍ରିୟତମ ବନ୍ଧୁ ଏ ଯେ ମୋର ।

ମନରେ ମୋ ଲକ୍ଷ୍ୟ ଅଭିଳାଷ
ନିଷ୍ପନ୍ନ ହୋଇଅଛି ଯେବେ,
ଏ ମୋର ବଇଁଶୀ ସ୍ୱରେ
କଷ୍ଟେ ତାକୁ ଅଣୁଛି ମୁଁ ତେବେ ।

ଉତ୍କଳର ଅଧିପତି ହୋଇ
ସଯତନେ ରକ୍ଷିତ ସମାଧି,
ମନେ ବହି ଶରଧା ସୁହାଗ
ବଜାଉଛି ମୁହିଁ ଦୁଃଖ-ବାଦୀ ।"

୬

ପରାକ୍ରମ କଣ୍ଠ ଶୋଭା ଡାହ୍ମ
ମାନମୟୀ ଉତ୍କଳର ରାଣୀ
ରକ୍ତାରୁଣ ଚଞ୍ଚଳ ଅଧରେ
ଫୁଟାଇଲେ ଧୀର ନମ୍ରବାଣୀ ।

"ହେ ଦେବ, ମୁଁ ବୁଝିବି କପର
ତୁମର ସେ ମହତ୍ତ୍ୱର କଥା ?
ତରଙ୍ଗିଣୀ ପାରଇ କି ବୁଝି
ଅମ୍ବୁଧିର କେବା ଗମ୍ଭୀରତା ?

ସ୍ମିତାଧରେ କପିଳେନ୍ଦ୍ର ଦେବ
ଉତ୍ତରିଲେ, "ଅୟି ପ୍ରିୟତମା,
ତୁମ ଇଚ୍ଛା ନ ପାରିଲି ରଖି
ସେଥିପାଇଁ ଦେବ ମୋତେ କ୍ଷମା ।

ହୃଦୟର ସେ କଳ୍ପନା ତୁମ୍ଭର
ରଖି ନ ପାରିଲି ଅଟେ ସଖି,
ତଟିନୀର ମଧୁରତା ହାୟ
ପାରାବାର ପାରେ ନାହିଁ ରଖି ।"

---

# ମରନାହିଁ ସେ ତ ମରଣ-ଜୟୀ

କାଳ ମନ୍ୱନ୍ତର ପଡ଼ିଥିଲା ଘୋର ଭୟଙ୍କର
ନ' ଅଙ୍କର ।
ସୁନାର ଅମର ଉତ୍କଳ ତାର କାଳିମା ଛୁଇଁ
ହାଡ଼ମାଳ ଯେମନ୍ତ ଦିଶୁଥିଲା ସତେ ମଶାଣିଭୂଇଁ ।
ଲକ୍ଷ୍ମୀର ଦେଶ ହୋଇ ପାଇଥିଲା ଅହା କି ଜୁର !
ହା ଅନ୍ନ ଡାକେ ପୂରି ଉଠୁଥିଲା ପଲ୍ଲୀପୁର ।
ଦୁଇ ତିନି ଦିନେ ନ ପାଇ ତୋକ
ଝଡ଼ପୋକ ପରି ଝଡ଼ି ପଡ଼ୁଥିଲେ ବହୁତ ଲୋକ,
କଳନା ନାହିଁ ;
ହାଇ ରେ ହାଇ ।

କେତେ କାଳର ଅଜଣା ସେ କେଉଁ ପଲ୍ଲୀ କଣେ
କେବଳ ଜଣେ,
ବାର ବରଷର କେବଳ ଭୋକାଶ୍ୱ ବାଳକଟିଏ
ମରଣର ଦାଉ ଜୟ କରିଥିଲା ମରଣଦାବେ ।
ତା' ଗୀତ ଆଜି
ଆକାଶେ ବତାସେ ପ୍ରତି ନିଶ୍ୱାସେ ଉଠୁଚି ବାଜି ।

ସନାତନ ତେବେ ଭାଙ୍ଗି ଦୁଃଖେ
ଦୂରଗ୍ରାମେ ଯାଇ ଭିକ ମାଗୁଥିଲା କାତର ବୁକେ ।
ସବୁଏ ଅନ୍ତୁର ବଞ୍ଚାଇବାକୁ ଜୀବନେ ଠିକ
ଏତେବେଳେ ଭଲା କିଏ ସେ କାହାକୁ ଦେଉଛି ଭିକ ।

ଦୁଇ ଦିନ ଯାଇ ତିନି ଦିନ ହେଲା ତଥାପି କାହିଁ
କପାଳେ ତାହାର ଖୁଦ ମୁଠିଏ ବି ଜୁଟିଲା ନାହିଁ ।
ଚଉକି ପଡ଼ାଏ ଘୁରି ଘୁରି ସିଏ ହୋଇଲା ଅଥା
ଘିଁ ଘିଁ ତାର ଘୁରିଲା ମଥା ।

ସାତ ଆଠ ଘର ଘୁରିବାର ପରେ ଫିଟିଲା ମୁଦ
ସାଂଜଯାଏ ଘରୁ ପାଇଲା ଯେବେ ସେ ଦାଉଣ୍ଡି ଖୁଦ ।
କପାଳେ ଲଗାଇ କହିଲା, "ପ୍ରଭୁ,
କିସ ଜଣାଇବ ? ବାଳୁତର ଦୁଃଖ ଜାଣିଛ ସବୁ ।"

ଠିଆ ହେଲା ସଦୁଁ ଅତି ଆଗରେ,
ପଧାନ ବୁଢ଼ାଟି କଅଁଳେଇ ତାକୁ କହିଲା, "ବାଂଚରେ
ଦେଇଥିଲେ ପ୍ରଭୁ ଧନ ସମ୍ପଦ ମହା ସୁଖରେ
ଦିନ ନାଉଥିଲା—ପୁଅ ଝିଅ ଶିଖି କଉତୁକରେ ।
ଏଇକ୍ଷଣି ଆମେ କାଂଗାଲ ଜାଣ ତୋହରି ପରି
କିସ ମୁଁ ଦେବ ରେ ଦୁଇଦିନ ହେଲା ଜଳିନି ଚୁଲି ।
ସେଇ ଯେ ଦଶୁଣ୍ଡି ଧୋବଲା କୋଠା
ସେଇଠିକି ଗଲେ ମିଳିପାରେ ଅରେ मुठେ ଦାନା ।"

୧୪

ଡାକିଲା ଯାଇ ସେ ଜମିଦାର ଘର ଫାଟକ ଆଗେ
ଦଣ୍ଡେକ ପରେ ଦାସୀଟାଏ ଆସି ପଚାରିଲା ରାଗେ ।
"ଭିକ ତ ମାଗିବୁ କାଇଁ ରେ ଏଡ଼ିକି ସାହିଟେ ଜନ୍ ?
ସାଙ୍ଗେ ଉଠିଲେ ଝୁଙ୍ଗୁଡ଼ିଏ ବ ତୋର ପିଠିରେ ଗଲ୍ଲ ।
ଏକୁଠି ପଡ଼ିବ ଏଇଠି ତମର ହୋଇଛି ଠିକ
ଦିନ ରାତ ଖାଲି କେତେଲଇ ଖୋଜୁଚ ଭିକ-ଭିକ ।"
ଅଦ୍ଭୁରି ତାପ,
"ଅବଜ୍ଞା ଅଛି କା ଥୋଇ ଦେଇଅଛୁ ତମର ବାପ ।"

ଭିକାରିର ବୁକେ ବିଦ୍ରୋହ-ନିଆଁ ଉଠିଲା ଜଳି
ପୃଥ୍ବୀ କା ଅବେଶେ ନୟନ ନିମିଷେ ଗଲା ତ ମଳି ।
ସନାତନ ଧର୍ମ ଉତ୍ତର ଦେଲା ଆସି ନରମ,
"ତାହା ଅବଜ୍ଞାତି ଦେବଲ ଗାଉ ହେବ ସ୍ଥିର ଧରମ ।"
"ଧଅ ଧଅ ବେଗେ ପଣ୍ଡିତ ସୋଦର କାମ ବନ୍ଧୁତ
ଫୋଲାଖିଅ ମାଥେ କେ କାନ୍ଧ ପାରିବ ?

କାଧୁ କାନ୍ଧୁ ତ

ଗୁଜଳ ମୂଠିକ ନେଅଲେ ଅତ ଗେଥଲେ
ଛୁଆଡ଼ି ଦେଲା ମୁକୁଳା ତାହାର ଅଞ୍ଚଳେ ।

ଗୁଡ଼ଅ ଦୋକାନ ଦେଖିଲା ଯାଉଁ ସେ ଅଳପ ଦୂରେ
"ମୁଢ଼ି ମୁଠେ ମିଳୁ" ଜଣାଇଲା ବଡ଼ କାତର ସ୍ୱରେ ।

ଦୋକାନୀ କହିଲା, "ମୁଁ ବେବସାୟୀ
ବକାକଣା ଯାଗା ଏଠି ନୋ ଖୋଜୁଚୁ ମାଗଣା କାହିଁ ।"

"ତମ ଧାନ ହେଲେ ଅଛୁଟି ହଇ ହେ ଗୁଡ଼ଅ ସାଉ
ମୁଠେ ଦଅ, କସ ଭାବୁଚ ଆଉ ?"

"ଯା, ଯା ଏଠୁ ଦେଇ ହେଇ ଅମେ ମଲୁଣି ଭଲ
ଛୁଡ଼ ମରିଗଲେ ସଂସାରେ କା'ର କଅଣି ଗଲା ?"

ଫଅଁ କରି ଗୋଟେ ନିଶ୍ୱାସ ମାରି ହତାଶ ବୁକେ
ଦାଣ୍ଡେ ଦାଣ୍ଡେ ବୁଲିଲା ବାଳକ ଖୋଜି ଦୁଖେ ।
କୁଆଡ଼େ କାହିଁ ।
ଦୃଷ୍ଟି ଫେରାଇ ଚୁହିଁଲା ନାହିଁ ।

ଗାଆଁ ମୁଣ୍ଡରେ ଗୁଳ ଘରଟିଏ—ମୁହଁରେ ତାର
ବଢ଼ିଲା ଗଛଟି ମେଲିଚି ପତର ଗହଳ ଡାଳ ।
ବସିଗଲା ସେଇ ପିଣ୍ଡାପଟରେ
ଅକାଶ ପାତାଳ ଭାଳିଲା ବାହୁଡ଼ି ମରମ ତଳେ ।

ଘଡ଼କେ ସେ ଘରୁ ବାହାରିଲେ ଜଣେ ପ୍ରୌଢ଼ା ନାରୀ
ଥକା ହୋଇ ତହିଁ ଛୁଡ଼ା ହୋଇଗଲା କଅଣି ଭାଳି ।
ବୁଲାଇ ସେନେହ—ସଜଳ ଆଖି
ଧନାତନ ଦେହେ ଅମୀୟ ପରଶ ଦେଲା କା ମାଖି ।

ସ୍ନେହ-କାଂଗାଳ ବାଳକର ହୃସ୍କା ବୁଝିଲା ତାହା
ସତେ କି କୁଆଡ଼େ ଦୂର ହୋଇଗଲା ପ୍ରାଣର ଦାହା ।
ଉଚ୍ଛ୍ୱାସ-ଛାଇ-ହୀନ ମରୁର ପଥେ
ସ୍ଫଟିକ ଜଳର ଝରଣା ଗୋଟିଏ ଦେଖିଲା ସତେ ।
ବହୁତ ଭରସା କରି ସେ କହିଲା ବିନମ୍ର ବାଣୀ
"ପିଇବାକୁ ମତେ ଦେବ କି ମାଉସି, ଟୋପିଏ ପାଣି ?
ଦେବ ଯଦି ଦିଅ, ଦେଇଗି ଦିଅ;
ତିନି ଦିନ ହେଲା ତୋରାଣି ଦେଖିନି, କଳୁଚି ଦିହ ।"
ଚର ଚର ହୋଇ ଘରେ ଯାଇ ତହୁଁ କରୁଣାମୟୀ
କଂସାଏ ଭାତ ଅଣି ସେଇଲାଗେ ଥୋଇଲା ତହିଁ
"ମିଇ୍ ଦେ, ଆଗେ ଲାଗିବ ଭଲ,
ହାଳିଆ ଦେହରେ ଆସିବ ଟୋହାଟେ ଟିକିଏ ବଳ ।" .

ସନାତନ ତହୁଁ ପିଇଲା ଉପର ତୋରାଣିତକ
ମାଇଲା ଥକ ।
ସେଉଁ ଭାତତକ ରହିଥିଲା ତହୁଁ ନ ଖାଇ କାଳେ
କରୁଣାମୟୀକ ଗୃହିଁଲା··· ···ବାକଲେ ଅତି ବାକାଳେ ।
"ତିନି ଦିନ ହେଲା ଅଗେ ବାପ କିଛି ଖାଇନୁ ପରା
ଖାଇ ଦେଉ ନାହୁଁ, ମନରେ କଅଣ ଭାବୁଚୁ ଭଲା ?
ମନରେ କଅଣ ଭାବୁଚୁ ଆଉ
ଲୁଗୁଉଚୁ କିଆଁ ଖୋଲି କରି କହ ଟୋଳିଆ ଯାଉ ।"

"ନାହିଁ ଗୋ ମାଉସି, କାହିଁ ଲୁଗୁଇବି ତୋ' ଆଗରେ ?
ଆସିଲା ବେଳେ ତ ଖାଇବାକୁ କିଛି ନ ଥିଲା ଘରେ ।
ଭାରି ଭୋକ ଥିଲା ବୋଉ ମୋର କିଛି ନ ଥିବ ଖାଇ
ଅଉଟି ପାଉଟି ହେଉଥିବ ଖାଲି ମୋ ସାନ ଭାଇ;
କାହିଁଲ, କେମିତି ଦେବି ମୁଁ ଗିଳି ?
ଘରେ ନେଇଗଲେ ଖାଇବୁଁ ଏତକ ସଭିଏ ମିଳି ।"

ଆକାଶ ପାତାଳ ଭାବିଲା ସେ ତହୁଁ ମରମଗତେ
କଅଣ ସତେ !
"ପିଲା ବୟସରେ ତୁ କେତେ ବଡ଼ ଗୁଣ ଅନ୍ତରେ ଧର !
ମୋହର ଥିଲା ଯେ ରଙ୍କୁଣୀ ଥାଳି
ଗୁଣରେ ସେ ଥିଲି ତୋହର ପରି ।"

କହୁଁ କହୁଁ ତାର କମ୍ପି ଉଠିଲା ମୁଖର କଥା
ଲୁହ ଜମି ଉଠି ଛଳ ଛଳ ହେଲା ଆଖିର ପତା ।
"ଆଉ କାହିଁ ତେବେ କହୁଚୁ ମଠ ?
ବୋଉ ଭାଇ ତୋର ଚାହିଁ ରହିଥିବେ ଯା' ତୁ ଛୁଟି ।"
ଭାତ ପୁଟୁଳିଟି ବାନ୍ଧିଲା ଅତି ଯତନ କରି
ମନରେ ଅତୁଳ ଆବେଗ ଧରି,
ଯାଉଛି କହି ସେ ଚଞ୍ଚଳ ହୋଇ ହେଲା ବାହାର
ଘରମୁହାଁ ବାଟ···ଭାରି ଉଛାଟ ମନ ତାହାର ।

୭।

ଉପାସିଆ ଦେହ-ମୁଣ୍ଡେ ତ ଝାଳି ମାରି ନେଉଚ
ପାଦ ଟଳ ଟଳ ତଥାପି ସଜୋରେ ପଥ ବାହୁଚ ।
ଉପରୁ ମାରୁଚ ନିଦାଘ ଖରା,
ଦହେ ଦହେ ତାର ଗଳି ଯାଉଅଛୁ ଅନଳ ପରା ।
କେତୁ ବାଟ ଗଲା · ନାମ ଜଣାନାହିଁ ନଈର କୂଳ
ବସିଲା କଷ୍ଟେ ପୂରୁଣା ସେ ବରଗଛର ମୂଳେ ।
ଟପ୍ ଟପ୍ ଟପ୍ ପଡ଼ିଲା କେତୋଟି ନାଲିଆ ଫଳ
ପେଟ ବକନରେ ଭରିଲା କଳ ।
ଭୋକ ତ ମଲାନି · ଓଲଟି ବଢ଼ିଲା, ହେଲାନି ସହି
ଫିଟାଇଲା ତାର ଭାତ ପୁଟୁଳାଟି ଅବେଗ ବହି ।
ପୂଣି ସେ କି ଭାବି ପୂରୁବ ପରି
ବାନ୍ଧିଲା ସେଇ ଭାତ ପୁଟୁଳାଟି ଯତନ କରି ।

ଅନ୍ତୁର ବହୁତ ରାସ୍ତା ରହିଚ···ଅଢ଼େଇ କୋଶ
କେମିତ ଭଲା ସେ ମାରିବ ଭୋକ ରେ ମାରିବ ଶୋଷ ?
ନଈ ଧାରେ ଯାଇ ଅଞ୍ଜୁଳେ ପିଇଲା ଗିଲାସେ ପାଣି
ଗୁଳଙ୍କ ନେଉଛି ଆସିଲା ଉଡ଼ନ୍ତ ଜଙ୍ଘ ମାନ ।
ଭାତ ପୁଟୁଳାଟି ଜଡ଼ାଇ ବୁକେ,
ଭୂଇଁ-ଶେଯତଳେ ଶୋଇପଡ଼ିଲା ସେ ବିରାମ ସୁଖେ ।

ଝଅଁଳ ପବନେ ଗୃହୁଁ ଗୃହୁଁ ଅହା ନାସୁନେ ଛାଢ
କାହୁଁ କାହୁଁ ନିଦ ଭରିଗଲା ସତେ ଅନ୍ଧକାର ।
ବେଳ ଖସିଗଲା—ଖରା ମଉଳିଲା—ଆଜି ତ କାହିଁ
ସନାତନ ଛହୁଁ ଉଠିଲା ନାହିଁ ।
ଝଙ୍କାଡ଼ି ଦେଇ ଗୃଜୁଲଟିମାନ ଭୃତଟିମାନ
କାଆ କାଆ ରବ କୁଆ ଉଠାଇଲେ ଭୋକର ଛାନ ।

ଯାଉଁ ଯାଉଁ କେହି କହିଲା ସିଅଡ଼େ ଲକ୍ଷ୍ୟ କରି
“କିଏ ସେ ଗୋଟିଏ ଯାଉଛି ମରି ।”
ଆକାଶ ବତାସ କାନେ କାନେ ଡାର ଉଠିଲା କହି—
“ମରି ନାହିଁ ସେ ତ ମରଣ-ଜୟୀ ।”

---

## ଅନ୍ଧର ଚକ୍ଷୁଲାଭ

ଶିଷ୍ୟବର୍ଗ ସଙ୍ଗେ ଘେନ ଯାଉଁ ଯାଉଁ ସାଧୁ ମହିମା ଗୋସାଇଁ
ଉପପଥ କୂପ ଗର୍ଭୁଁ ଉତ୍ତୋଳିଲେ ଦିନେ ଏକ ଅନ୍ଧଜନେ ।
ସନ୍ତୋଷ ତେଣିକ ଥାଉ କହି ଉଠେ ଅନ୍ଧ ସରୋଷ ବଚନେ
"କିଏ ତୁମ୍ଭେ ଅବିବେକ, ଉଦ୍ଧରିଲ ମତେ କହ କାହିଁପାଇଁ ?

ଅନ୍ଧ ମୁହିଁ ଦିବାନିଶି ଝୁରି ମରୁଥିଲି ଦୁଃଖ କ୍ଳେଶ ପାଇ
ମରି ତଳେ ଯାଇଥାନ୍ତି ଜୀବନ ଜଞ୍ଜାଳୁ । କହିଲେ କି ହେବ ?
ଜୀବନ ରଖିଲ ଏବେ, ଚକ୍ଷୁ କିବା ମତେ ଦେବ ତୁମେ ଦେବ ?"
"ଅଚ୍ଛା ବାବା, ଚକ୍ଷୁ ତୁମେ ପାଇବ ଅଚିରେ" କହିଲେ ଗୋସାଇଁ ।

ଚାଲିଲେ ବାବାଜୀ ସାଥେ ଅନ୍ଧ ଭ୍ରମ ଭୋଇ ଲଙ୍ଘି ପଲ୍ଲୀପୁର
ଅକୂଳ ଅସୀମ ପଥେ ଅଲେଖ ଭଜନ କରି ଦିବା ରାତେ
ପ୍ରବ୍ରଜ୍ୟାର ଦୀକ୍ଷା ଧରି ଯାପିଲେ ଜୀବନ । ଦିନକର ପ୍ରାତେ
ଗୁରୁଙ୍କେ କହିଲେ ଅନ୍ଧ, "ଦେଖିଲି ଦେଖିଲି, ଅନ୍ଧତା ମୋ ଦୂର ।

ଅନ୍ତରେ ଦେଖାଇ ମୁହିଁ ସୃଷ୍ଟିର ସୌଷ୍ଠବ ବିରାଟ ବିପୁଳ
ବିଶ୍ୱର ଯେତେ ଯା ଦୃଶ୍ୟ । ଏତେଦିନେ ଚକ୍ଷୁ ଦେଲ ମହାମନ୍ତ୍ର !"
"ଚକ୍ଷୁ ଦେଇନାହିଁ ମୁଁ ତ" କହିଲେ ଗୋସାଇଁ; "ନାହିଁ ସେ ଶକତି,
ଚକ୍ଷୁ ପାଇଅଛ ତୁମେ ଅଲେଖ ପ୍ରଭୁର ଆଲୋକ ଅତୁଳ ।"

---

ଛଇ

ଅଞ୍ଚଳର ଏଇ ଯେ ସମ୍ବଲପୁର
ଦୂର ଅତୀତର ବୁକେ
ପାଟଣାର ଏକ ଅଞ୍ଚଳ ଥିଲା
କଥା ଅଛି ଲୋକମୁଖେ ।

ପାଟଣାର ରାଜା ଅନୁଜର ଦେଖି
ଅନୁପମ ଅବଦାନ
ଅନାବିଲ ମନେ ତୋଳି ଦେଇଥିଲେ
ସ୍ନେହର ବିପୁଳ ଦାନ ।

ବାହାରେ ସେ ଦିନ  ଯେଉଁ ରହିଥିଲା
କୃଷ୍ଣ ତମିର-ରାଶି
ବର୍ଷଣାତୁର  ଘନ ସମ୍ଭାରେ
ଭରି ଉଠୁଥିଲା ଦିଶି ।

ରାଜ-ଅବରୋଧେ  ନୃସିଂହ ଦେବ
ପାଟନାର ଅଧିପତି
ପୁରତେ ଡକାଇ  କହିଲେ ବଚନ
ବିକଳ ବଧିର ଅତି ।

"ପ୍ରଭାତରୁ ଆଜି  ପ୍ରସବ ବ୍ୟଥାରେ
ଅଛନ୍ତି କାତର ରାଣୀ
କି କରିବା ମୁଁ ତ  ଭାବି ପାରୁନାହିଁ,
କି କରିବା ରାମ ଦାଣୀ ?

ବହୁତ ଧାଈ  ଲାଗିଲେ କି ହେବ ?
ହେଉ ନାହିଁ କିଛି ଫଳ,
ବେଳୁ ବେଳ ଖାଲି  ଗର୍ଭବେଦନା
ହେଉଅଛି ପରବଳ ।"

ରାମ ଦାସୀ ତହୁଁ ବିନୟୁ ବଚନ
ନିବେଦିଲେ, "ମହାରାଜ,
ରାତ୍ରେ ମୋହର ଚିନ୍ତା ପାରୁ ନା
କି ହୋଇ ପାରିବ ଆଜ ।

ନଦୀ ଆର ପାର ଗ୍ରାମେ ରହିଅଛି
ଅନ୍ନପୂର୍ଣ୍ଣିକା ଏକ ଧାଈ
ଛୁଇଁ ଦେଲେ ସେ ତ ଯନ୍ତ୍ରଣା ଯିବ
ମିଳିଯିବ ଶୁଭ ଶାନ୍ତି ।

ମାସ ଏ ଲଗେ ବରଷା ଲାଗିଛି
ଝିପି ଝିପି ଝର ଝର
ବନ୍ୟାର ବେଗେ ଉଦ୍ବେଳ ହୋଇ
ବହୁଅଛି ନଦୀଜଳ ।

ଅନ୍ଧାରେ ପୁଣି ଅଛେ ମହାରାଜ
ପନ୍ଥା ତ ଦିଶୁ ନାହିଁ
କେଉଁପରି ଅବା ଧାଈ ଆସିବ
ରାତି ପାହିଲେ ଯାଇ..."

"କି ଘଟିବ ଏଇ ସନ୍ଧି ଭିତରେ
କି ଘଟିବ କିଏ ଜାଣେ ?"
ନୃପତି ଭାଷିଲେ ଅତୁଳ କାତରେ
ଅତୁଳ ବ୍ୟଥିତ ପ୍ରାଣେ ।

ସମବ୍ୟଥା ହୋଇ ଜଣାଇଲେ ଦାସୀ
"ଆଉ କିଛି ନାହିଁ ସ୍ପୃହା
ଏ ବିପଦେ ମାଆ ପାଟଣେଶ୍ୱରୀ
ନିଶ୍ଚୟ ହେବେ ସାହା ।"

ସବୁ କଥା ଶୁଣି ବୈଷ୍ଣବ ମଲିକ
ଜଣାଇଲା, "ମହାପ୍ରଭୁ,
ନିର୍ବୋଧ ମୁହିଁ ଫକଟ ତବ
ବୁଝି ପାରୁଅଛୁ ସବୁ ।

ସକଳ ବିପଦେ ପ୍ରସ୍ତୁତ ଅଛୁ
ପ୍ରିୟ ପରିବାର ଛାଡ଼ି
ମଣିମା ରୁହିଁଲେ ଘଡ଼ିକ ଭିତରେ
ଏ ଜୀବନ ଦେବି ଢାଳି ।

ମାୟାବତୀ ନଦୀ ବକ୍ଷ ମୋହର
ଜୀବନର ଖେଳଘର
ଭାବୁ ନାହିଁ ମୁହିଁ ଘନ ଘୋର ନିଶି
ବନ୍ୟା-ବ୍ୟାକୁଳ ଜଳ ।

ଭୟ ନାହିଁ ମୋର ଲଙ୍ଘି ଯିବି ମୁଁ
ଭୟ ନାହିଁ ମୋର ମନେ
ମାନ କପଟ ଦୁର୍ଗମ ଜଳେ
ଆଣିବି ମୁଁ ଅଭ ଜଣେ ?"

ଗର୍ମ୍ମୀରେ ତହୁଁ ଉଠିଗଲେ ରାଜା
ମର୍ମ-ବେଦନା ଘୋର
"ଏ ବିପଦେ ମାଆ ପାଟନେଶ୍ୱରୀ
ତୁ ଏକା ଭରସା ମୋର ।"

ତରୁଣ ଯୁବକ ବଳରାମ ଦେବ
ପାଟନାର ପଟ୍ଟାୟୁତ
ଦୂରେ ଦୂରେ ରହି ନୀରବ ମଉନେ
ଦେଖୁଥିଲେ ଏ ଯାବତ ।

ଅନ୍ଧ ଧାମରେ
ଚଞ୍ଚଳ ଯାଇ
ମାୟାବତୀ ନଦୀତୀରେ
ବିପୁଳ ସାହସେ
ଶରୀର ମେଲିଲେ
ବନ୍ୟା ବ୍ୟାକୁଳ ନୀରେ ।

ସ୍ୱର୍ଗ ଅଶିଷ
ଅଦ୍ଭୁତ ଭେଟିବ
ଚଳ ବିଦ୍ୟୁତ-ଲେଖା
ଘନ ଘନ ସ୍ଫୁରି
ଦୁର୍ଗମ ଜଟିଳ
ଦେଖାଇଲା ପଥ-ରେଖା ।

ନଦୀ ଅର ପାର
ଗ୍ରାମେ ଯାଇ ଧୀର
ଧାତ୍ରୀରେ ଖୋଜି ବେଗେ
ଦୁଃସହ ସେଇ
ଦୁର୍ଗତି ଗାଥା
ଜଣାଇଲେ ଉଦ୍‌ବେଗେ ।

ଧାତ୍ରୀ ବୋଇଲା,
"ବନ୍ୟାଜଳରେ
ମନ୍ଦ ମୁହିଁ କେଉଁପରି ?"
ଧୀର ପଣ୍ଡାସୁତ
କହିଲେ, "ମୁଁ ଜାଣେ
ତୁମେ ଯିବ ନେଉଁ ଭଳି ।"

ଧାତ୍ରୀରେ ଉଚ୍ଚ ପୃଷ୍ଠେ ବସାଇ
ପ୍ଲାବିତ ନଦୀର ଜଳେ
ସନ୍ତରି ମହା— ଧୈର୍ଯ୍ୟ ସାହସେ
ଲଙ୍ଘିଗଲେ ସେ ଖରେ ।

ରଜନୀର ସେଇ ତୃତୀୟ ପ୍ରହରେ
ନୂତନା ଧାତ୍ରୀ କୂଳେ,
ପ୍ରିୟ ପରିଜନେ ବେଷ୍ଟିତ କରି
ମିଳିଲେ ଅନ୍ତଃପୁରେ ।

ଧାତ୍ରୀର ଗୃହୁ ଚଞ୍ଚଳ ସେବକେ
ସ୍ୱସ୍ତି ଲଭିଲେ ରାଣୀ
ଦୁର୍ବିସହ ସେ ଗର୍ଭର ଶୂଳ
ଅଉ ନ ପାରିଲେ ଜାଣି ।

ରଜନୀର ସେଇ ଅନ୍ତିମ ଯାମେ
ନବୀନ ସୂର୍ଯ୍ୟ ସମ,
ପ୍ରସବିଲେ ନବ ନନ୍ଦନ ଏକ
ସୁନ୍ଦର ମନୋରମ ।

ରାଜ-ଅବବୋଧେ ଉଚ୍ଛୁଳି ପଡ଼ିଲା
ଉଲ୍ଲାସ କଳରବ
ଅନ୍ତରେ ରାଜା ଅନୁଭବ କଲେ
ସ୍ୱର୍ଗୀୟ ବଇଭବ ।

ବାହୁରେ ଭାଇଙ୍କ ବନ୍ଧନ କରି
କହିଲେ, "ଭାଇ ତୁ ଧନ୍ୟ,
ସଂସାରେ କଏ ଏ କଥା କରିବ
ଭାଇ ବିନା ଆଉ ଅନ୍ୟ ।

ଅଙ୍ଗଟେ ମୋର ଭାଗ କରି ନେଲୁ
ଏ ମୋର ଆପଦଭାର
ଏକା ମୁଁ କପରି ଭୁଞ୍ଜିବି ମୋର
ସମ୍ପଦ ଅଧିକାର ।

ମରମ ଭିତର ବାଞ୍ଛା ଏ ମୋର
ଏହାହିଁ ମୋହର ଧାର୍ଯ୍ୟ
ଭାଗ କରି ଆମେ ଭୁଞ୍ଜିବା ଜାଣି
ଏ ମୋର ପାଟନା ରାଜ୍ୟ ।"

"ଅଙ୍କାବନ୍ଧ ମୁଁ"

ଅନୁଜ କହଇ
"ରାଜ୍ୟ ମୋର କି ହେବ ?

ପାଶେ ପାଶେ ରଖି

ସେବାରେ ସୁଯୋଗ
ଦିଅ ମୋତେ ଦିଅ ଦେବ ।"

"ଅଙ୍କାବନ୍ଧ ତୁ"

ନୃପତି ଭାଷିଲେ
"ଅଙ୍କା ଏ ମୋର ଅଜ,

ଅଙ୍ଗ ନଦୀର

ସେପାର ରାଜ୍ୟେ
ହୁଅ ନବ ଅଧିରାଜ ।"

---

## ଦୀନକୃଷ୍ଣ ଦାସ

'ରସକଲ୍ଲୋଳ' ର କବି ଦୀନକୃଷ୍ଣ ଦାସ
ଏକଦା ମିଳିଲେ ଯାଇ ଅନ୍ତରେ ଉଲ୍ଲାସ ।
କବୀନ୍ଦ୍ର ଉପେନ୍ଦ୍ର ପାଖେ । କାବ୍ୟ ଉପହାର
ଦେଇ ମନେ ମନେ ପ୍ରୀତି ଲଭିଲେ ଅପାର ।

ଭଞ୍ଜ କବିବର ତାଙ୍କୁ ପ୍ରଗଲ୍ଭ ଭାବେ
କାବ୍ୟ ପାଠ ଶେଷ କରି କହିଲେ ହରଷେ ।
"ପ୍ରୀତ ମୁହିଁ ପାଇ ତବ ପ୍ରିୟ ଅବଦାନ
ଆହେ କବି କିବା ଦେବି ତାର ପ୍ରତିଦାନ ?

ସୁନ୍ଦର କବିତା ତବ, ମନ-ମୋହକରୀ
ମଧୁର ବଧୁର ମୃଦୁ କାନ୍ତ ପଦାବଳୀ ।
କିନ୍ତୁ ତହିଁ ରହିଛି ଯେ କ୍ଷୀଣ ବ୍ୟତିକ୍ରମ
ଭାବୁଅଛି ପୂର୍ଣ୍ଣଚନ୍ଦ୍ରେ କଳଙ୍କର ସମ ।

ଯେଉଁ ବର୍ଣ୍ଣ ଅଦେୟ ରଖି ଅହେ ପ୍ରିୟବର
ରଚିଅଛ କାବ୍ୟ ତବ ମନୋଜ୍ଞ ସୁନ୍ଦର ।
ସେହି ବର୍ଣ୍ଣ ଅଦେୟ ରଖି ଗ୍ରନ୍ଥଟିର ନାମ
ଦେଇଥିଲେ ହୋଇଥାନ୍ତା ଅତି ଅଭିରାମ ।"

ଉତ୍କଳକବି ଚକ୍ଷୁ ମୁଖ ଉଠିଲା ଉଜ୍ଜ୍ୱଳି
ଦୀପ୍ତ ହରଷେ, ଲୋମେ ଲୋମେ ଉଠିଲା ସଞ୍ଚରି ।
ହର୍ଷଶିରୀ ! କଣ୍ଠବୀଣା ସୁମଞ୍ଜୁଳତରେ
ଝଙ୍କାର ଉଠିଲା ଧୀର କମନୀୟ ସ୍ୱରେ ।

"ସେହିପରି, ସେହିପରି ମୁହିଁ ଅବିକଳ
ଭାବିଥିଲି ମନେ ମନେ ଅହେ କବିବର ।
'କେଳିକଲ୍ଲୋଳ' ମୁଁ ତାର ଦେଇଥିଲି ନାମ
ତଳେ ତୃପ୍ତ ହେଲା ନାହିଁ ତହିଁ ମୋର ପ୍ରାଣ ।

କିଏ ମୋର କାନେ କାନେ କହିଦେଲା, 'ନାହିଁ-
ହେଲା ନାହିଁ'—ନାମ ତେଣୁ ଦେଲା ବଦଳାଇ ।
କେଳି ତୁହେ କାବ୍ୟେ ମୋର ରସ ଖେଳି ରସ
ଲଙ୍ଘି ନ ପାରିଲି ମୁହିଁ ରସର ସ୍ମରଣ ।"

ରସକଲ୍ଲୋଳର କବି କହିଲେ ଯେ ବାଣୀ
ଭଞ୍ଜକବି ପ୍ରାଣେ ତାହା କେମନ୍ତେ କେଜାଣି
ଛୁଇଁ ଦେଲା, କବି ପୁଣି ମନ୍ତ୍ରମୁଗ୍ଧବତ
ଆହୁର ଅହୁର ବାରେ ପଢ଼ିଲେ ସେ ଗ୍ରନ୍ଥ ।

ଅନ୍ତରେ ଅନ୍ତରେ କବି କଲେ ପ୍ରୀତି ଲଭି
ସ୍ତରେ ସ୍ତରେ ପରଶିଲେ ରସର ପ୍ରଭାବ ।
ସଜଳ ନୟନେ ତହୁଁ ଗଦ ଗଦ ଭାଷେ
କହିଲେ ଉଚ୍ଛ୍ୱାସ-ଭରା ରସର ଉଲ୍ଲାସେ ।

"ସତ୍ୟ କବି, ସତ୍ୟ କବି ରସର କଲ୍ଲୋଳ
ଖେଳୁଅଛି ତବ ଗ୍ରନ୍ଥେ । ହୃଦୟୁ ବିଭୋଳ
ହେଉଅଛୁ ଆରମ୍ଭିତେ! ସେ ଯେ ବ୍ୟତିକ୍ରମ
ତୁହେ କରୁ; ଭାବୁଅଛୁ ତାହା କ୍ଷୀଣତମ ।

ପୂର୍ଣ୍ଣ ଶଶୀ ଯେତେବେଳେ ଜ୍ୟୋତ୍ସ୍ନାର ଜୁଆର
ସୃଜଧାଏ, କିଏ ତେବେ କଳଙ୍କ ତାହାର
ମନେ ରଖେ ? ବୁଝିଅଛି ଏବେ ଏ ହୃଦୟ,
ମନେ କିଛି ନ ଘେନିବ ଅହେ ରସମୟ ।"

"ପ୍ରିୟତମେ," ଉତ୍ତରିଲେ ଦୀନକୃଷ୍ଣ ଦାସ
"କହୁଛ କି, କହୁଛ କି ? ମୋତେ ପରିହାସ ?
ରସମୟ କୃଷ୍ଣ ମୋର କାବ୍ୟର ନାୟକ
ଦୀନ କୃଷ୍ଣଦାସ ମୁହିଁ କେବଳ ଗାୟକ ।"

---

# ବୀରରାଣୀ ଶୁକଦେଈ

ବାଙ୍କି-ନଅରେ          ଯୁଦ୍ଧ-ବାରତା
        ପଶିଲା ସତେ କି ବଜ୍ର-ବାଣ !
"ଖୋରଧା ରାଜାର          ଖର ଅସିଧାରେ
        ବାଙ୍କି-ଭୂପତି ତେଜିଲେ ପ୍ରାଣ ।"
କଲରୋଳ ତୋଳି          ଅନ୍ତଃପୁରିକା
        କାନ୍ଦି ଉଠିଲେ କାତର ସ୍ୱରେ
ଉତଲା ହୃଦୟର          ଅଧିର ଆବେଗ
        ଉଛୁଳାଇ ଦେଲେ ଅଶ୍ରୁଜଳେ ।
ମାନ ତରୁଣୀ          ରାଣୀ ଶୁକ ଦେଈ
        ଦାରୁଣ ଶୋକର ବାରତା ଶୁଣି
ପାଷାଣ ପରାଏ          ଦଣ୍ଡେକ ଲାଗି
        ହୋଇଲେ ନୀରବ, ହୋଇଲେ ତୁନି ।
"ମୁକ୍ତି ତ ଆଜ          ମିଳିବ ନାହିଁ ରେ
        କାତର ଆଖିର ଅଶ୍ରୁଧାରେ
ଦଗ୍ଧ ହୃଦୟର          ତୃପ୍ତି ମିଳିବ
        ଅରାତି ଛାତିର ରକ୍ତ-ଗାରେ ।"
ଯୁବରାଜ-ଶିର          ଚୁମ୍ବନ କରି
        କହିଲେ, "ରେ ବାପ, କାନ୍ଦ ନାହିଁ ।
ସଜ ହୁଅ ବେଗେ          ଯୋଦ୍ଧାର ବେଶେ
        ସଜ ହୁଅ ବେଗେ ଯୁଦ୍ଧ ପାଇଁ ।"

ଦଣ୍ଡକ ପରେ        ବୃଦ୍ଧ ମନ୍ତ୍ରୀ
ସାକ୍ଷାତ ଦେଇ ରାଣୀର ପାଶେ
ନିବେଦିଲେ ନିଜ        ଅନ୍ତର-କଥା
କାତରତା-ଭରା ସଜଳ ଭାଷେ ।

"ମଣିମା ଆଜି ଏ        ଦାରୁଣ ବାରତା
ଶୁଣିବା ପାଇଁ କି ରହିବ ପ୍ରାଣ
ବାଙ୍କିର ଆଜି        ଗୌରବ-ରବି
ଚିରଦିନ ପାଇଁ ଅସ୍ତମାନ ।

ଶତ୍ରୁ ଦଳପେ        ମାଡ଼ି ଆସୁଅଛି
ରହିଅଛି ଆଜି ଅଳପ ଦୂରେ
ବାଙ୍କି ମୁଲକ        ଗ୍ରାସି ପକାଇବ
ଆସି ହୋଇଲାଣି ଗୋପାଳପୁରରେ ।

ଏତେବେଳେ ଆଉ        ଅନ୍ୟ ଉପାୟ
ଅନ୍ୟ ପନ୍ଥା ଦିଶୁ ତ ନାହିଁ
ଭାବୁଅଛି ମନେ        ସନ୍ଧି କରିବା
ରାଇଜର ଏକ ଅଂଶ ଦେଇ ।

ନାବାଳକ ଏଇ        ଯୁବରାଜ ହେଲେ
ଭୁଞ୍ଜିବେ ଧନେ ରହିବ ଯାହା
ଅନ୍ୟ ଉପାୟ        ଦିଶୁନାହିଁ ମୋତେ
ଦିଶୁନାହିଁ ମୋତେ ଅନ୍ୟ ରାହା ।"

"କିସ କହୁଅଛ" ପଚାରିଲେ ରାଣୀ
"ବୃଦ୍ଧ ମନ୍ତ୍ରି ! କହୁଛ କିସ ?
ଏ ଯେ ପ୍ରସ୍ତାବ ଆଣୁଅଛ ତୁମେ
ଲାଗୁଅଛି ମୋତେ ବିଷମ ବିଷ ।

କେସନେ ଆଜ ମୁଁ ଏଡ଼େ ଲାଞ୍ଛନା
ବରଣ କରିବି ଜୀବନ ପରେ
ମରଣର ଭୟେ ଶରଣ ପଶିବି
ପର-ଦନ୍ତାଙ୍କ ଚରଣ ତଳେ ।

ମନ୍ତ୍ରୀ ହେ ଏଇ ଅନୁରୋଧ ମୋର
ଏତେବେଳେ ଆଉ କରନା ଡେରି,
ସଜ୍ଜିତ କର ପାଇକ ବାହିନୀ
ଶତ୍ରୁ-ସମରେ ଯିବି ମୁଁ କାଲି ।"

ବୁଝାଇଲେ ପୁଣି ବୃଦ୍ଧ ମନ୍ତ୍ରୀ
"କାପାଇଁ ମଣିମା ଏ ଅଧୀରତା ?
ସନ୍ଧି ନ କଲେ ରକ୍ଷା ନୋହେ ନାହିଁ
ଯୁଦ୍ଧ ଜୁହାର ସହଜ କଥା ।

ଶ୍ରୀମୁଖ-ଆଦେଶ ହେଲେ ମୁଁ ଆଗରେ
ଯତ୍ନ କରିବି ପରାଣ ଭରି
ବୃଦ୍ଧର ଏଇ ଶେଷ ମିନତିଟି
ଘେନାହେଉ ବାରେ କରୁଣାକରି ।"

ଅନ୍ତରେ ଯାର                    ଅଗ୍ନିର ଶିଖା
          ଦପ୍ ଦପ୍ ଦପ୍ ଉଠଇ ଜଳ
ଧମନୀର ଲହୁ                    ଫୁଟି ଉଠୁଅଛୁ
          ସବେ କ ଉଷ୍ଣ ଝରଣା ଭଳ ।

ଶୁଣୁ ଶୁଣୁ ସେଇ                    କାପୁରୁଷ ବାଣୀ
          ଝଲକ ଉଠିଲ ଦୀପ୍ତ ଭାଲ
କରୁଣ ନୟନ—                    ପ୍ରାନ୍ତ ହୋଇଲ
          ବହ୍ନିର ତେଜେ ରକ୍ତ ଲାଲ ।

"ମୁଁ ଏ ଭାଗ                    ବୃଦ୍ଧ ମନ୍ତ୍ରୀ
          ଏ ଭୀରୁ ଭାଷଣ କାତର ବାଣୀ
ତୁମ୍ଭେ କ ଜାଣିବ                    ଅନ୍ତର ମୋର
          କ ଅଘାତେ ଏବେ ହେଉଛ ହାଣି ।

ଖାଇଜଯାକର                    କେହ୍ନ ନ ଶୁଣିଲେ
          କେହ୍ନ ନ ଲଢ଼ିଲେ ମୋହର ପାଇଁ
ସାଥେ ଘେନ ମୋର                    ଏ ଦୟାନିଧିଙ୍କ
          ମୁକ୍ତିସାଗରେ ଝାସିବ ଯାଇଁ ।

ରାଜ-ଲକ୍ଷ୍ମୀର                    ଅପମାନ ବେଳେ
          ଆଜ ମୁହିଁ ବୀର ଛଡ଼ଇ ଚାଲ
ଶଙ୍କିତ ବୁକେ                    ଧର୍ମ ବସୋର
          ସହ ପାରବ କ "ଜୀବନଜାଲା ?"

ଅମିତ ପ୍ରଭାବେ       ଜଳି ଜଳି ରାଣୀ
    ସୂର୍ଯ୍ୟକାନ୍ତ-ମଣିକା ସମ
ବହ୍ନି ଉଗାର       ପ୍ରଜ୍ୱାଳି ଦେଲେ
    ବୃଦ୍ଧର ଧୀର ଶୀତଳ ମନ ।

"ରାଜା ଚାଲିଗଲେ,       ଯୁଦ୍ଧ କରିବା
    ସହଜ ନୁହେଁ ଏ ବିଷମ ବେଳେ
ତଥାପି ଯାଉଛି ।"       ବୃଦ୍ଧ ମନ୍ତ୍ରୀ
    ବିନୟେ ପ୍ରଣମି ବିଦାୟ ନେଲେ ।

ଗ୍ରାମେ ଗ୍ରାମେ ତହୁଁ       ସମ୍ବାଦ ଗଲା
    ଗୃହେ ଗୃହେ ଗଲା ଦାରୁଣ ବାଣୀ
"ରାଜା ସିନା ଗଲେ       ରାଇଜର ଲାଗି,
    ଯୁଦ୍ଧ କରିବେ ରାଇଜ-ରାଣୀ ।"

ବିକଟ କୁହାଟେ       ପାଇକ ବାହିନୀ
    ସଜାଗି ଉଠିଲେ ଉଚ୍ଚକଣ୍ଠେ
ଧନୁବାଣ ଧରି       ତରୁଆଳ ଧରି
    ବାହାରି ପଡ଼ିଲେ ଦୀପ୍ତ ଶତେ ।

ବରଷା ଋତୁର       ନିର୍ଝର ସମ
    ଚାଲିଲେ ବହୁତ ବାଙ୍କିମୁଖେ,
ରାତକ ଭିତରେ       ବହୁତ ସଇନ
    ଠୁଳ ହୋଇଗଲେ ବାଙ୍କି-ବୁକେ ।

ପୂର୍ବ ଗଗନେ    ମୁକ୍ତ ନୋହୁଣୁ
ଅରୁଣା ଉଷାର ପୂର୍‌-ଦୁଆର
ଫିଟିଲା ସହସା    ଦୁର୍ଗ ତୋରଣ
ରାଣୀର ବାହିନୀ ହେଲେ ବାହାର ।

"ଜୟ ଚଣ୍ଡିକା"    ନାଦେ କମ୍ପାଇ
ଧୂଳିର ବଉଦ ନଭେ ଉଠାଇ
ଦୂର ପଥ ବାହି    ଦଳ ସହରକେ
ଶତ୍ରୁ ସଇନ ଭେଟିଲେ ଯାଇ ।

ଧୈନାଳ ବେଶ    ବାଳେକ ରାଣୀର
କଠୋରେ ହସିଲେ ଖୋରଧା-ଦଳ
ଲାଗିଲା ଯୁଦ୍ଧ    ତୁମୁଳ କ୍ଷୁବ୍ଧ
ଜୀବନ ଢାଳିଲେ ବାଙ୍କି-ବଳ ।

ପ୍ରତିଶୋଧ ପାଇଁ    ଖୋଜି ହେଲେ ରାଣୀ
"କାହିଁ ଅତତାୟୀ କାହିଁ ରେ କାହିଁ ?
ଏ ରାଜ ଧଣ୍ଡା    ଏ ପାଟ ଖଣ୍ଡା
ଧନ୍ୟ ତେବେ ରେ ହୋଇବ ଯାଇଁ ।"

ସହସା ମିଳିଲେ    ବଡ଼ମ୍ବା-ସେନା
ବାଙ୍କିର ହେଲା ଦର୍ପୋଦୟ
ଯେ ଆଶା ଭରସା    କରିଥିଲେ ଆଗେ
ବାଙ୍କି-ଭୂପତି ଧନଞ୍ଜୟ ।

ବାଙ୍କି-ପାଇକ ଗରଜି ଉଠିଲେ
ଅସୁର ଅସୁର ଭୀଷଣ ତେଜେ
ଖୋରଧାର ବନ୍ଧୁ ପାଇକ ସଇନ
ଶୁଆଇଲେ ମହାନିଦ୍ରା-ଶେଯେ ।

ଖୋରଧା ନୃପତି ଦୁର୍ଗତି ଦେଖି
ଗରଜି ଉଠିଲେ ଦର୍ପ ଭରି
"ଡାକି ଉଠ ଏବେ ଖୋରଧା ପାଇକ
ହଣ୍ଟରେଣ୍ଟର ଝିରଣା ଭଳି ।

ନଇଁ ପଡ଼ିଥିଲେ ଖୋରଧା ସଇନ
ଜାଗି ନ ପାରିଲେ ଆଉ ତ କାହିଁ
ପୂର୍ବ ସାହସେ ପୂର୍ବ ରଭସେ
ଶତ୍ରୁ ସହିତ ଲଢ଼ିବା ପାଇଁ ।

ହତ ହେଲେ ଶେଷେ ବାଙ୍କିର ହାତେ
ବୀର ସେନାପତି 'ଧନୁର୍ଦ୍ଧର'
ବାଙ୍କିର ହାତେ ବନ୍ଧ ହୋଇଲେ
ଖୋରଧା ଭୂମିର ଅଧୀଶ୍ବର ।

ଜୟ ଆରବେ ମନ୍ଦ୍ର ଉଠିଲା
ବାଙ୍କି ବଳର ବାଜଯୁ ଭେରୀ,
ଅରି ପକ୍ଷର ଦାଖ ଉପରେ
ବାଙ୍କି-ପତାକା ଉଠିଲା ଖେଳି ।

ଦଣ୍ଡକ ପାଇଁ ଉଲ୍ଲାସ ଶିଖା
ଜାଗିଲା ରାଣୀର ସଜଳ ମନେ
ସନ୍ଧ୍ୟାର ଶିଖା ରଂଜି ଉଠଇ
ଆକାଶେ ଯେସନେ ସଜଳ ଘନେ ।

"ଅପମାନ ମୋତେ ଦିଅନାହିଁ ଆଜ"
ଖୋରଧା ନୃପତି କହିଲେ ବାଣୀ
"ବାଳମୃ ଆଜ କରୁଚ କାହିଁକି
ପତିହନ୍ତାରେ ପକାଅ ହାଣି ।"

ଶତ୍ରୁର ବୀର ନିବେଦନ ଶୁଣି
ଦର୍ପେ ନାଚିଲା ସୈନ୍ୟ-ବୁକୁ
ଅନାଇଁ ରହିଲେ କିବା ସେ ଆଦେଶ
ଫିଟିବ ଏ ଲାଗେ ରାଣୀର ମୁଖୁ ।

"ନାରୀ ମୁଁ କି ଆଜ ରକ୍ତ-ଲୋଲୁପା ?
କିଏ ଯେ ଏପରି କରିଚି ମୋତେ ?
ଭସାଇଥିଲ ମୋତେ ଅଶ୍ରୁ-ସଲିଳେ
ଭସାଇଚି ମୋତେ ରୁଧିର ସ୍ରୋତେ ।

ପତି ବିନା ମୁହିଁ କି ହେଉଚି ଆଜ
ଖୋରଧା ରାଣୀ ତ ଏପରି ହେବେ ।
ପ୍ରତିଶୋଧ ମୋର ପୂର୍ଣ୍ଣ ହୋଇଲାଣି
ଅହେ ରାଜା ତୁମେ ମୁକ୍ତ ଏବେ ।'

ବାଙ୍କି ଗ୍ରୀବା        ସମ୍ମୁଖଭାଗେ
ଖୋଚଧାରୀଜନ ସରମଭରେ
ବ୍ୟକୁଳ ବ୍ୟାକୁଳ        ବେଦନା ସ୍ୱପାକ
ପ୍ରକାଶିଲେ ଧୀର ନମ୍ର ସ୍ୱରେ ।

"କଦାଚନ ଏ ଯେ        ଦାନ୍ତ ଦେଉର
ଦେଉର ଆଜ ଏ ଅଭାଗୀ ପରେ
କ୍ଷତ୍ରିୟ ବୀର        ହୋଇ ମୁଁ କପଟ
ମୁଖ ଦେଖାଇବି ଧରଣୀ ତଳେ ।

ନାରୀ ନୁହଁ ତୁମେ,        ସାକ୍ଷାତ ଦେବୀ
ସାକ୍ଷାତ ତୁମେ କରୁଣା ସମା
ଯେଉଁ ଅପରାଧ        କରିଅଛି ମୁହିଁ
କେମନେ ତାହାର ମାଗିବି କ୍ଷମା ?

ଉଦାରତା ବଳେ        ଆଜ ମୋତେ ଜାଣି
ପରାଜୟ କଲ ଆପଣା ଆଗେ
ଚନ୍ଦନ ତୁମେ        ଅଙ୍କା ରହିବ
ଖୋଚଧା ଗ୍ରୀବା ଚନ୍ଦନଭାଗେ ।

ତୁମର ବିଜୟ—        ସଙ୍କେତ ରହୁ
ମୋର ପରାଜୟ-ଚିହ୍ନ ରହୁ
ମୋର କୁଣ୍ଡଳ        ପ୍ରଗନା ଗୋଟିକ
ବାଙ୍କି ସହିତ ଯୁକ୍ତ ହେଉ ।"

ସନ୍ଧିର ଶେଷେ ପରାଜିତ ସେନା
ବିଷାଦେ ଫେରିଲେ ଖୋରଧା ମୁଖେ
ବାକି ସଇନ ଫେରିଲେ ପୁଲକେ
ବିଜୟ-ଗରବ-ଦୃପ୍ତ ବୁକେ ।
ଚୁମ୍ବନ ଲେଖି ଦୟାନିଧି ଭାଲେ
ଆଖି-ଛଳେ ରାଣୀ ପଢ଼ିଲେ ଢଳି
ଶୋକର ଆବେଗେ ଧରିଲେ ଯେ ଶେଯ
ସେହିପରି ଆଉ ଉଠିଲେ ପଡ଼ି ।
ସବୁରି ହୃଦୟେ ଶଙ୍କା ଜାଗିଲା
"ଏ କି କଥା ପୁଣି ଏତେକ ପରେ"
ଯୁବରାଜ ଖାଲି "'ମାଆ', 'ମାଆ'" ବୋଲି
ଆକୁଳେ ଭାସିଲେ ଅଶ୍ରୁଜଳେ ।
ତନଧନ ପରେ ଆଖି-ଲୁହ ପୋଛି
କିସ ଭାବ ପୁଣି ଉଠିଲେ ରାଣୀ
କପାଳେ ଫୁଟାଇ କୁଞ୍ଚିତ ରେଖା
ଭାଷିଲେ ନବୀନ ଅଭୟ ବାଣୀ ।
"ଲୋଭକେ ଭାସି ମୁଁ ଝୁରିବି ନାହିଁ ରେ
ଅନଳେ ଝାସି ମୁଁ ମରିବି ନାହିଁ ,
ପାଷାଣି ପରାଣେ ବଞ୍ଚି ରହିବି
ଆରେ ଦୟାନିଧି ତୋହର ପାଇଁ ।"

## ବଢ଼େଇ ପିଲା

ଅଁକ ଦେଉଳରେ ଗଢ଼େଇ କାରିଗରୀ ବାଢ଼ିଲା ଅଜା
ସିନ୍ଧୁ ସଇକତେ ଚନ୍ଦ୍ରଭାଗା ଭୂଇଁ ଉଠିଲା ସାଜି ।
କାରଣ ବଢ଼େଇର ବୁଦ୍ଧି ବଳ ଯହିଁ ମଜ୍ଜିଥିଲା
ସାଧିଲା ତହିଁ ଅଜା ଧରମା ବୋଲି ଏକ ବଢ଼େଇ ପିଲା ।
କାରଣ ବଢ଼େଇର ମରମ ତଳେ ଭଳେ ସେଇଥି ଲାଗି
ଗୋଟିଏ କ୍ଷଣେ ପାଇଁ ହରଷ ଉଲ୍ଲାସ ଉଠିଲା ଜାଗି ।
କ୍ଷଣକ ପରେ ପୁଣି ସବୁର ବେଦନାରେ ଲାଗିଲା କାଳି
ସଭିଏ ଠୁଳ ହୋଇ ସରମ ଅପମାନେ ହୋଇଲେ ଭାଳି ।
ବଣେଇ ମହାରଣା ଅଗରେ ପଚାରିଲେ ବାତୁଳ ପ୍ରାୟ

'କାରଣ ବଢ଼େଇରେ ଦାୟୀ, କା ପୁଅରେ ଦାୟୀ ?"

"ବାରଣ ବଢ଼େଇ ତ ମୋହର ଜାତଭାଇ ମୋହର କୁଳ
ବାରଣ କହାଣରେ ଗଢ଼ିଲେ ଏ ଦେଉଳ ପାଷାଣ-ଫୁଲ ।
ବାରଣ ବଢ଼େଇର ଗର୍ବ ଗଉରବେ ମୋହର ମୁଖ
ବାରଣ ବଢ଼େଇର ଗର୍ବ ଗଉରବେ ଫୁଲେ ମୋ ବୁକ ।
ମୋହର ଜାତିକୁଳ ଉଜ୍ଜ୍ୱଳ କରି ଆଜି ମୋହର ପୁଅ
ଭେଦଇ ବୀର ଅଭିମନ୍ୟୁ ପରି ଅଜି ଚକ୍ରମ ବ୍ୟୂହ ।
ଜଗତ ତଳେ ଅଜି କରଇ ଅଦ୍ଭୁତ ଅନେକ କାମ
ଜଗତ ତଳେ ଅଜି ଆଙ୍କି ଦେଇଅଛି ଅମର ନାମ ।
ଅଧିକ କୁହେ କେହ୍ନ କାହାକ ନୁହେ କେହ୍ନ ତୁଳ୍ୟ ପ୍ରାୟ

ବାରଣ ବଢ଼େଇରେ ଦାୟ, ମୋ ପୁଅରେ ଦାୟ ।"

"କାଣୁଚ, ତୁମେ ଅଜ ପାରେବ ନାହିଁ ଏଣେ ଭରମ୍ଭ କୁଳ
ଗୋଟିଏ କଥା ଅଜ ଗମ୍ଭୀରତର କର ମନରେ ତୁଳ ।
ରାଜାର ଦରବାରେ ତମର ପୁଅ କଥା ପଡ଼ିଲେ କାଲ
ବାରଣ ବଢ଼େଇର ମୁହଁରେ କଷ୍ଟମ୍ଭ ଲଗିବ କାଳ ।
ବାରଣ ବଢ଼େଇର ରଖିବ ଯଦା ମାନ ଏଣିର ମଥା
ପାଶୋର ଦଅ ଅଜ ପୁଅର ଆଶା ତବ ପୁଅର କଥା ।
ଦେଉଳ ତଳେ ଅଜ ପୁଅରେ ବଳଦାଅ ଦେଖିବୁ ଆମେ
ଦେଉଳ ତୋଳିବାର କୀର୍ତ୍ତି ରହିବ ଆମର ନାମେ ।
ଭାଇ ରେ, ପୁଅ ଲଗି ଅସୁତ ଲୋଭ ଯଦା ଅସୁତ ମନେ
ବାରଣ ବଢ଼େଇର ମୁଣ୍ଡ କାଟ ଜାଣି ଦେଖିବ ତମେ ।

ସେ ଲାଗି ପଚାରୁଛ ତୁମର କିବା କହ ଅଭିପ୍ରାୟ ?

ବାରଣ ବନ୍ଧେଇରେ ଦାୟ, କି ପୁଅରେ ଦାୟ ?”

ବଜ୍ରସମ ସେହି ବିଷମ ପ୍ରଶ୍ନର ଉତ୍ତର ଶୁଣି
ବିଶେଇ ମହାରାଣୀ ଭୟରେ ସେହିପରି ରହିଲା ତୁନି ।
ଘଡ଼ିକ ପରେ କହେ ବାଷ୍ପ-ଗଦଗଦ କମ୍ପ ସ୍ୱରେ
“ଦାରୁଣ କଥା ଆଜ ପକାଉଅଛ ଯାହା ମୋହର ତୁଳେ ।
ନାହିଁ କି ଉପାୟ, କଅଣ କରିବ ମୁଁ କହିଲ ଦେଖି
ମୋହର ପ୍ରାଣ ବୋଲି ପ୍ରାଣଟି କେଉଁପରି ଦେବ ଯେ ଟେକି ?
ସେ ଦିନ ସିଏ ପରି ଉମର ଆଖି ଆଗେ ଆସିଛନ୍ତି ଏଥେ
ଚାହିଁ ଅଣି ଅହା ଚାହାଁ ହୋଇଅଛି ମୋହର ସାଥେ ?
‘କେଉଁକି ଚକଳରେ ଆହା ସେ ଖୋଜି ଖୋଜି ପାଇଛି ମଧେ
ମୋଡ଼ିଏ ଧନ ବୋଲି ବହୁଛି ଜଗତରେ ଯୁଗଳଗଢ଼େ ।
ସେ ଆଜ ଫିଟାଇବ ଝରଣା ଏଇ ମୋର ମରମ ତଳେ
କରକା କାୟାପରି ପାଷାଣ ହୃଦୟ ମୋର ମାୟାରେ ଗଳେ ।
କେମନେ କହ ଆଜ ହୋଇବ ଅତତାୟୀ କରୁଣାହୀନ
ଜାତିର ମାନ ଲାଗି ପୁଅରେ ବଳି ଦେବ ମୁହିଁ କଠିନ ?
କରିବ ଯାହା କର ମୋ ପ୍ରାଣ ନାଥ ପଛେ ହେ ଜାତିଭାଇ
ପୁଅରେ ବଳି ଦେଇ ପାରିବ ନାହିଁ ମୁହିଁ ପାରିବି ନାହିଁ ।
ତୁମେ ଯେ ପରୁଛର ଅଙ୍ଗସାର କଥା ଏହା କି ନ୍ୟାୟ ।”

ବାରଣ ବନ୍ଧେଇଟେ ନୁହେଁ, ମୋ ପୁଅରେ ଦାୟ ।”

ସହସା ନିମେଷକେ ଜନତା ଉହାଡ଼ରୁ ବାହାର ପଡ଼ି
କହିଲା କାର୍ତ୍ତିକ ଶୌର୍ଯ୍ୟଭରା ବାଣୀ ହସ୍ତଯୋଡ଼ି ।
"ନାସ୍ତି କରନାହିଁ, ନାସ୍ତି କରନାହିଁ, ହେ ମୋର ପିତା,
ବାରଣ ବଡ଼େଇଁର ଇଚ୍ଛା ନୋହୁ ଆଜ ଭୁଲୁଣ୍ଠିତା ।
କୀରତି-ରଙ୍କ ମୁଁ ଜୀବନ-ରଙ୍କ ମୁଁ ତ୍ରିହଇ କେବେ
ହିଁଡ଼ରେ ତାଳେ ତାଳେ ଜୀବନ ପଥ ପରେ ଅସିଛି ଏବେ ।
ବାରଣ ବଡ଼େଇଁର ମନର ଯାହା ରୁଚି ତାହା ମୋ ରୁଚି
ଜଗତ ଅଧିନରୁ ବିଶ୍ୱନୟନରୁ ଧରିବି ମୁଁ ଲୁଚି ।
ଜାଣିବେ ନାହିଁ ମତେ ଜାଣିବେ ନାହିଁ ମତେ ଜଗତେ କେହୁ
ଦେଉଳ ଚୂଳେ ଚଢ଼ି ଦେଉଳ ମୂଳେ ଆଜ ପଡ଼ିବ ଡେଇଁ ।
ଅତୁଳ ଆଗ୍ରହେ ମୁଁ ମୋର କରିବି ଏ ଜୀବନ ଦାନ
ରାଜାର ଦରବାରେ ବାରଣ ବଡ଼େଇଁର ରଖିବି ମାନ ।
ହେ ପିତା କହିଦଅ, ଏ ପଥେ ନୋହି ଆଉ ଅନ୍ତରାୟ
ବାରଣ ବଡ଼େଇଁରେ କେବଳ ମୋହର ଦାୟ ।"

ବାତୁଳ ପରି ତହୁଁ ବଢେଇ ମହାରଣା ଅବେଗଭରେ
ପୁଅରେ ଜଡ଼ାଇଁ ନିବିଡ଼ ବନ୍ଧନେ ବୁକୁର ତଳେ ।
ନୟନୁ ବହିଗଲା ଶ୍ରାବଣଧାରା ପରି ଉଚ୍ଛୁଳା ଲୁହ
"ଜାଣୁନି ଆଜ ମୁହିଁ ନୋହୁ ରେ ନୋହୁ ତୁହି ମୋହର ପୁଅ ।

ଦେବତା ଅଇଥିଲେ ଦେଉଳ ଗଢିଗଲେ ଧରଣୀତଳେ
ଧରଣୀ ତଳ ଛାଡ଼ି ପଳାଇ ଯାଉଅଛୁ ପୁଣି କା ଛଳେ ?
ମୁଁ କାହିଁ ହେବ କହ ତୋହର ପଥ ପରେ ଅନ୍ତରାୟ ?

ବାରଣ ବଢ଼େଇରେ କେବଳ ମୋହର ଦାୟ ।"

ଅଟାରେ କାହିଁ ପୁଣି ସେ କାଳ ଯାମିନୀର ତିମିର-ଜାଲ
ଅଙ୍କେ ଦେଖାଦେଲେ ଚନ୍ଦ୍ରଭାଗାପଥେ ରାଗରେ ଲାଲ୍ ।
ଊର୍ଦ୍ଧ୍ୱେ ମଥା ତୋଳି ଦେଉଳ ଗୋଟି ସିନା ରହିଛି ଠିଆ
ଦେଉଳ ତଳେ ଆଜି ମୃତ୍ୟୁ ବରିଅଛୁ ଅମର ହିୟା ।
ଦାରୁଣ ଅଭିଶାପ ଆଙ୍କି ଦେଲେ ଭାଗ୍ୟ ଉତ୍କଳରେ
ବାରଣ ବଢ଼େଇର ନାମରେ ଅପଯଶ ରହୁ ଭୂତଳେ ।
କାଳର ବୁକୁ ପରେ କାତରେ ବାଜୁଥିବ ହାୟ ରେ ହାୟ

"ବାରଣ ବଢ଼େଇରେ ଦାୟ କା ? ପୁଅରେ ଦାୟ ?"

---

# ବିସର୍ଜ୍ଜନ

ସଂଜ୍ଞାବିହୀନ ପ୍ରତାପରୁଦ୍ର
ରୋଗ ଶେଯେ
ବିଷମ ବେଦନା ପୂରିଅଛି ଦେହେ
ମହାତେଜେ ।
ପ୍ରିୟ ପରିଜନ ଚକିତ ନୟନେ
ଆକୁଳ ଅଥୟ ପୁର-ଅଙ୍ଗନେ
ସେବା ଶୁଶ୍ରୂଷା ଲାଗି ରହିଅଛି
ଅବିରଳ
ଚେତା ହେଲେ ନାହିଁ ଅବସର ।

ରାଜବୈଦ୍ୟ ଦେଲେଣି ଅନେକ
ଔଷଧି
କାହିଁ ତ ହେଲେ ଫଳ ଫଳି ନାହିଁ
ଏ ଅବଧି ।
ସୁପ୍ତ ଚେତନା ଜାଗୁନାହିଁ ଥରେ
ଲୁପ୍ତ ନାଡ଼ି ତ ଲାଗୁନାହିଁ କରେ,
ସବୁରି କଣ୍ଠ ଉଠଇ କାତର
ହାହାକାର
ନୟନୁ ଝରଇ ଲୁହଧାର ।

ମାନ ଦେଖୁଚି ଏକ ବିପରୀତ
ଯାଏ ଦେଖା
ତାରିଣୀ-ନୟନେ ସଞ୍ଚରେ ନାହିଁ
ଲଜ୍ଜା-ରେଖା ।
ଅଚଳ ଶୟନ ଅନ୍ତରେ ବସି
କେ ଜାଣି କାହିଁ ସେ ରହିଚି ଭରସି
ଥିର ଅଚପଳ ଆଖିର ତାରକା
ନୁହେ ଫିକା
ନିଶ୍ଚଳ ଯଥା ଦୀପଶିଖା ।

ପୂଜାରିଣୀ ପରି ଉଠିଲି ତାରିଣୀ
ଯୁବରାଣୀ
କୋରକିତ କରି ଊର୍ଦ୍ଧ୍ୱେ ତୋଳିଲି
ବେନି ପାଣି ।
"ଚିର ଲୀଳାମୟ ଅହେ ଭଗବାନ
ଘେନ ଏବେ ଘେନ ଏଇ ମୋର ପ୍ରାଣ ।
ପ୍ରିୟତମେ ମୋର କରିଦିଅ ଆଜି
ନାରୀମୟ
ମାଗୁଚି ବେଦନା-ବହ୍ନିମୟ ।"

କଣ୍ଠର ବୀଣା ସ୍ତବ୍ଧ ହୋଇଲା
ପଲକରେ
ଜର୍ଜ୍ଜରି ହେଲା ତନୁ ଧାର ସ୍ୱେଦ.
ଝଲକରେ ।

ରମ୍ଭାତରୁର ପତ୍ର ପରାଏ
ଶିହରିଲା ବାଳା କମ୍ପିତ କାଏ,
ପଡ଼ିଗଲା ମଣି-କୁଟ୍ଟିମତଳେ
ସୁନ୍ଦରୀ
ଯେସନେ ଛିନ୍ନ ବଲ୍ଲରୀ ।

ଅନ୍ତଃପୁରିକା ଠୁଳ ହୋଇଗଲେ
ଚତ୍ୱରେ ।
ସଞ୍ଜ୍ଞାହୀନାରେ ଉତ୍ତୋଳି ନେଲେ
ସତ୍ୱରେ ।
ଦେଖିଲେ ବିଷମ ଦୁଃସହ ତାତ
ଅଙ୍ଗଟି ସାରା ଉଠୁଅଛି ମାତ,
ପଲଙ୍କେ ତାହାର ହସିତ ଫୁଲର
ତନୁରେଖା
ଅସିତ ବରଣୀ ଗଲା ଦେଖା ।

ନିଜ ଦେହେ ନେଇ ପରାଣପତିର
                    ରୋଗତାପ
ବରି ନେଲା ବାଳା ଚଣ୍ଡୀ ମରଣ-
                    ଅଭିଶାପ ।
ପ୍ରଭୁଙ୍କ ଚରଣ ମନେ ମନେ ପୂଜି
ଦୁଇଟି ଦିବସେ ଆଖି ଦେଲା ବୁଜି,
ଦୁଇଟି ଦିବସେ ମଳିତ ପଙ୍କ
                    ଦେଖ ଅଜ,
            ରୋଗହୀନ ହେଲେ ଯୁବରାଜ ।

---

## ପ୍ରଭାବତୀର ଅଭିଯାନ

ପଞ୍ଚଣୟୁ ଶେଷେ ରଣଭୂମି ଛାଡ଼ି ଦଳବଳ ଘେନି ସୁଖେ
ରଣପୁର ଯୁବରାଜ ଫେରୁଥିଲେ ରଣପୁର ଅଭିମୁଖେ ।
କପିଶା ନଦୀର ପାଶେ
ଶିବିର ପକାଇ ରହି ଯାଇଥିଲେ ରଜନୀ ଯାପନ ଆଶେ ।

ଶୀକର-ଶୀତଳ ଶାନ୍ତ ସମୀର ପ୍ରୀତି-ଉପହାର ପରି
ଶ୍ରାନ୍ତ ବିବାହ ଯାତ୍ରୀଦଳର ଶ୍ରମ ନେଉଥିଲା ହରି ।
କାନ୍ତ କୁହୁକବଳେ
ନବସ୍ତ୍ରୀ ବାଳା ମନ ମୋହୁଥିଲା ଧ୍ୱାନ୍ତ ଝାଉଁଳ ତଳେ ।

ବାରତା ମିଳନ୍ତା—ବଙ୍ଗ-ନବାବ ଦର୍ପିତ ଅଭିଯାନେ
ବୀର ବାଳକଟେ ବାହାରି ହୋଇଛି ଉତ୍କଳ ଅଭିମାନେ ।
ମନ୍ତ୍ରେମ ଚେତଣୁ ଆଜି
ଉଦ୍‌ବେଗ ଭରେ ଗୌଡ଼ ନଗରେ ସାଜୁଛି ଯୁଦ୍ଧସାଜ ।

ମୁଗ୍ଧ ବିଧୁରେ ମଞ୍ଜୁମନ୍ଦିରେ ଭାଷିଲେ ତରୁଣୀ ପ୍ରାଣ
"ଜୀବନେର ଆଜ ଅଭିସାରପଥେ ଡାକୁଅଛି ଅଭିଯାନ ।
ଅଗୋ ମୋର ମନୋରମା
ଜାଣିପାରୁଛ ତ ଅଗୋ ସଙ୍ଗିନୀ ଜୀବନେର ପ୍ରିୟତମା ।

ଶତ୍ରୁ ଏଣେ ତ ଗୋପନେ ଗୋପନେ ଗିରି କାନ୍ତାର ଭେଦି
ଗ୍ରାମ ଗ୍ରାମ ଧରି ଲୁଣ୍ଠନ କରି ସତ୍ୱରେ ଯିବ ଖେଦି ।
ଭାବୁଅଛି ସେହି କଥା
ଅନ୍ତରେ ମୋର ଭରି ଉଠୁଅଛି ବହୁଳ ଆକୁଳତା ।

କେଉଁପରି ଯିବ ଏହି ସନ୍ଦେଶ କେଉଁ ପଥେ ଯିବ ସତି ।
କିପରି ଜାଣିବେ ଏହି ଉଦ୍‌ଭ୍ରାନ୍ତ ଉତ୍କଳ-ଗଜପତି ।
"କିଏ ନେବ ସମାଚାର ?
ସ୍ୱଦେଶର ଲାଗି କିଏ ସେ ବହିବ ଏ ଗୁରୁ କର୍ମଭାର ?"

ପ୍ରବାଳ ଅଧରେ ବିକଶିତ କରି ଶୁଭ୍ର ମୁକୁତା ହାସ
ନବ ପରିଣୀତା କାନ୍ତା କହଇ ମଞ୍ଜୁମଧୁର ଭାଷ,
"ଚିନ୍ତା କରୁଛ ଯେବେ
ସ୍ୱଦେଶର ଲାଗି ଏଇ ଗୁରୁଭାର ନିଜେ ନେଉନାହଁ ଏବେ ?"

"ଭାବୁଚ କି ପ୍ରିୟେ ରଣଭୀରୁ ମୁହିଁ ମଣିପୁର ଯୁବରାଜ
ଏଇ ଗୁରୁଭାର ନିଜେ ନେବା ପାଇଁ କୁଣ୍ଠିତ ମୁହିଁ ଆଜ ।
ମାତ୍ର ଅୟି ଗୋ ପ୍ରିୟା
ତୁମରି ଚିନ୍ତା ତୁମରି କଥା ତ ଆକୁଳ କରୁଚି ହିୟା ।"

"ପୁରୁଷ ତୁମେ ତ ସ୍ୱଦେଶର ଲାଗି ଦର୍ପେ ଉଠୁଚ ଜାଗି
ରମଣୀ ମୋହରେ ଶକ୍ତି ନାହିଁ କି ନିଜର ରକ୍ଷା ଲାଗି ?
ବୃଥା ହେଉଅଛୁ ଭୀତ,
ପ୍ରଭାବତୀ ମୁହିଁ ବିକ୍ରମବତୀ ନୁହଇ ଅବଳା ନାରୀ ।

ନାରୀ ମୁଁ କି ଖାଲି ଫୁଲ ସୁକୁମାରୀ, ଫୁଲ-ବାଣ ଖାଲି ହାଣେ
ତୁମର ପରାଏ ଧନୁ ଧରି କରେ ତୀର ମୁଁ ତ ମାରି ଜାଣେ ।
ଅଶ୍ୱବାହନେ ବସି
ଦୃପ୍ତ ସାହସେ ରଣ ଗହନେ ସଞ୍ଚାଳି ପାରେ ଅସି ।

ପିତା ଯେବେ ମୋର ମୋଗଲ ସଙ୍ଗେ ରଣେ ଉଠୁଥିଲେ ମାତି
ବହୁ ବାର ମୁହିଁ ଯୁଦ୍ଧେ ଯାଇଛି ନିର୍ଭୟ ମୋର ସ୍ମୃତି ।
ମୁହିଁ ବୀର ରାଜବାଳା
ଭାଗ୍ୟ ମୋହର ବୀର-ଗଳେ ପୁଣି ଦେଇଚି ବରଣମାଳା ।"

'ଭାଗ୍ୟ ମୋହର' ଉଚ୍ଚାରି ବୀର ସୋହାଗ-ଚଟୁଳ ଭାଷେ
ପ୍ରିୟାରେ ହରଷେ ଅଶ୍ଳେଷି ନେଲେ ବଳସ୍ଫୀତ ବାହୁପାଶେ ।
"ଭାଗ୍ୟ ମୋହର ସତ୍ୟ,
ମୁଁ ଯେବେ ଯାଉଚି ତୁମେ ଏ ଶିବିରେ ନିର୍ଭୟେ ଥାଅ ରହି ।"

କଜ୍ଜ୍ୱଳ-ନିଭ ନିଶାର ନିକଷତଳେ ନ ହେଉଣୁ ରେଖା
ସୁର-ନନ୍ଦନୀ ଉଷା ରୂପସୀର ଉଜ୍ଜ୍ୱଳ ହେମରେଖା,
ଉଦ୍‌ବେଗ ଭରା ସୁଖେ
ସୈନିକବର ଘୋଟକ ବାହନେ ଛୁଟିଲେ କଟକ ମୁଖେ ।

ସୁବରାଣୀ ଏଣେ ଚଞ୍ଚଳ ସେହି ରାତ୍ରି ନୋହୁଣୁ ଶେଷ
ବାରଜଣ ଦାସୀ ସଙ୍ଗତେ ନିଜେ ଧରିଲେ ପୁରୁଷ ବେଶ ।
ପ୍ରଭାତେ ବାହାର ହୋଇ
ସଙ୍ଗେ ଘେନିଲେ କରବାଳଧାରୀ ପଞ୍ଚ ଅଶ୍ୱାରୋହୀ ।

ଉତ୍କଳର ସେ ତାମ୍ରଲିପ୍ତି ଅଞ୍ଚଳେ ଘୂରି ଘୂରି
ଥିର ଅଚପଳ ବିଦ୍ୟୁତ ପରି ଗ୍ରାମେ ଗ୍ରାମେ ବୁଲି ବୁଲି,
ପ୍ରଭାବତୀ ଯୁବରାଣୀ
ପଲ୍ଲୀଏ ପଲ୍ଲୀଏ ଜାଳିଦେଲେ ଖର ଦୀପ୍ତ ଅନଳବାଣୀ ।

"ଜାଗ୍ରତ ହୁଅ ଧୀବରବାହିନୀ ଜାଗ୍ରତ ହୁଅ ଆଜ
ଶତ୍ରୁ ହେଲାଣି ଅଗ୍ରସର ଅସି ପିନ୍ଧି ରଣସାଜ,
ସ୍ୱଦେଶମାତାର ଲାଗି
ବିପଦ ଅଗ୍ରେ ବୀର ବିକ୍ରମେ ଉଠ ରେ ଉଠ ରେ ଜାଗି ।"

ତାମ୍ରଲିପ୍ତି ଧୀବରବାହିନୀ ମନ୍ଦିରା ଉଠିଲେ ମାତି
ଅଗ୍ରେ ବଢ଼ିଲେ ଅଭୟ୍ର ମାଞ୍ଜି ରକ୍ତେ ଉଠିଲା ମାତି ।
ଯୋଦ୍ଧା ପାଇକକୁଳ
ଗଙ୍ଗାନଦୀର ଦକ୍ଷିଣ ପାର୍ଶ୍ୱେ ଉତ୍‌ବେଗେ ହେଲେ ଠୁଳ ।

ନବାବ ବାହିନୀ ଅସି ଉତ୍ତରବେଳେ ଗଙ୍ଗାର ଆରପାରେ
ଶିବିର ଥାପିଲେ ପକ୍ଷି-ଗହଳ ଅମ୍ବବନର ଧାରେ,
ଚିନ୍ତା-ବିହୀନ ବୁକେ
ବିଶ୍ରାମସୁଖ-ସ୍ୱପ୍ନେ ମାତିଲେ ଉଲ୍ଲାସ କୌତୁକେ ।

ସ୍ତବ୍ଧ ନୀରବ ନଶୀଥ ସ୍ୱନେ ସୁପ୍ତ ଶିବରେ ପଶି
ଉତ୍କଳସେନା ଉଲ୍ଲୋଳ ମନେ ଗୃଳଲେ ଦାରୁଣ ଅସି,
ଅପ୍ରତ୍ୟୁଷ ଜାଗରଣ
ସ୍ତବ୍ଧ ନଶୀଥେ କ୍ଷୁବ୍ଧ ଲହରେ ଜାଗିଲା ତୁମୁଳ ରଣ ।

ପ୍ରଭାତେ ଯେକାଳେ ଧରା ଚୁମ୍ବିଲା ଅରୁଣ ରଶ୍ମି ମାଳା
ଅତୁଳ ଯୁଦ୍ଧ ମତ୍ତ ହୋଇଲା ବହିଲା ରକ୍ତ ଧାରା
ହେଲା ଅତି ଉଚ୍ଛୁଳ
ରଙ୍ଗାବରଣ ଧାରଣ କରିଲା ଗଙ୍ଗା ନଦୀର ଜଳ ।

ବିପୁଳ ବାହିନୀ ସଙ୍ଗତେ ଘେନି ଉତ୍କଳ-ଗଜପତି
ଶତ୍ରୁ ଉପରେ ଚଢ଼ାଉ କରିଲେ ବୀର ବିକ୍ରମେ ଅତି ।
ଦୁର୍ଦ୍ଦ କୃପାଣ ପାଣି
ଦୀପ୍ତ ସାହସେ କ୍ଷିପ୍ର ରଭସେ ହାଣିଲେ ଅମିତ ଅରି ।

ଲହରିତ ସେଇ ସୈନ୍ୟ-ସାଗର ଯବନବାହିନୀ ହେରି
ଆକୁଳ ପରାଣେ ତ୍ରସ୍ତ ଚରଣେ ପଳାଇଲେ ପ୍ରାଣ ଧରି ।
ସଂଗ୍ରାମଭୂମି ମଧ୍ୟୁ
ଉଚ୍ଚେ ଉଠିଲା "ଜୟ ଉତ୍କଳ-ଯୁବରାଜ ଜୟ ଜୟ ।"

ବିପୁଳ ବିଜୟ କୋଳାହଳ ଶୁଣି ଉଦ୍‌ବେଗ ଭରା ଚିତେ
ଉତ୍କଳନାଥ ବିସ୍ମୟଭରେ ପୁଚ୍ଛିଲେ ଉଚ୍ଚକଣ୍ଠେ—
"କଣ୍ଟ ଦୁଷ୍ଟ ହେଉଜନାହିଁ
ମୁବରାଜ ସେ ତ ଦୂରେ ଚଳି ଗଲେ କାଞ୍ଚି ସହରେ ଯାଇ !"

ସମ୍ମୁଖରେ ଜବା ଅନ୍ତରେ ଭାବି ରଣପୁର-ଯୁବରାଜ,
ଘୋଟକ ଛୁଟାଇ ନୟନେ ଦେଖିଲେ ପ୍ରିୟାର ଯୋଦ୍ଧୃସାଜ ।
ଭାଷିଲେ ହର୍ଷଭରେ,
"ଧନ୍ୟ ଗୋ ପ୍ରିୟା, ତ ଲାଗି ଆଜ ଧନ୍ୟ ମୁଁ ଧରାପରେ ।"

ଅଚିରେ ତରୁଣ ଦମ୍ପତି ମିଳି ଉତ୍କଳନାଥ ପାଶେ
ଉତ୍କଳନାଥ-ଚରଣପଦ୍ମ ବନ୍ଦିଲେ ଉଲ୍ଲାସେ ।
ବିସ୍ମିତ ଗଜପତି
ଅନାଇ ରହିଲେ ଚକିତ ନୟନ, ସ୍ତବ୍ଧ ସ୍ତିମିତ ମତି ।

ବିସ୍ମୟ ଦୂର କରି ଚଞ୍ଚଳ ମୁକୁଳିତ କରି ବାଣୀ
ସସ୍ମିତ ମୁଖରୁ ଅଧରେ ଭାଷିଲେ ରଣପୁର-ଯୁବରାଜ ।
"ମୁଗଧ ବଧୂ ଏ ମୋର
ଉତ୍କଳ-ଯୁବରାଜ ବେଶେ ଆଜ ଜିଣିଲା ଯୁଦ୍ଧ ଘୋର ।"

ଉଲ୍ଲାସ ଭରା ଅନ୍ତରେ ତହୁଁ ଉତ୍କଳ ଗଜପତି
ଭାଷିଲେ ମଧୁର ଆଶିଷବଚନ ପରମ ଆଦରେ ଅତି ।
"ଧନ୍ୟ ଧନ୍ୟ ତୁମେ
ଉତ୍କଳ-ବଧୂ ବିଜୟିନୀ ଆଜ ହୋଇଛ ସମରଭୂମେ ।

ଦମ୍ପତି ତୁମେ ମୋହଲାଗି ଆଜି ବରି ନବ ଅଭିଯାନ,
ଘୋର ସଙ୍କଟେ ରକ୍ଷିଲ ଗର୍ବ ରକ୍ଷିଲ ମୋହର ମାନ ।
ଦେଉଅଛୁ ଏକ୍ଷଣି,
ଯୁବରାଜ, ତୋତେ 'ନରେନ୍ଦ୍ର' ପଦ, ଯୁବରାଣୀ, 'ନାଗମଣି ।"



## ମଦନମଣିର ଗାନ

ଅଠଗଡ଼ ଭୂପ    ବାଲ୍ମୀକେଶ୍ୱର ପାଶେ
କର ଯୁଗ୍ମରୁ    ଜଣାଇଲେ ଧୀର ଭାଷେ ।
"ଲଳିତ ମଧୁର    ମଦନମଣିର ଗାନ
ଶୁଣିଅଛୁ ଯିଏ    ଜଗତେ ଭାଗ୍ୟବାନ ।"
ଜଣାଇଲେ ନରରାଜ,
"ସାନ୍ଧ୍ୟ ଲଗନେ    ଗାନ ବାଦନର
ଆୟୋଜନ ହେଉ ଆଜ ।"

ନିଦାଘ ନିବାସ    ନଗର-ପ୍ରାନ୍ତ-ଭାଗେ
କେତକୀ କୁଞ୍ଜ    ଗନ୍ଧ ସୁଷମାରେ ଜାଗେ ।
ମଞ୍ଜୁଳ ପୁଣି    ନାଗେଶ୍ୱର ଉପବନ
ପୁଷ୍ପ ବିଭବେ    ଝଲସଇ ସୁଶୋଭନ ।
ଅଙ୍ଗନତଳେ ତାର
ଗାନ ବାଦନର    ଉତ୍ସବ ବସେ
ରୁଚିର ଚମତ୍କାର ।

ଦିବାଶେଷେ ଯେବେ ଶ୍ରାନ୍ତନାଶିନୀ ନିଶି
ଝଲିଲା ଶୁକ୍ଳ ସୁହାସେ ହସାଇ ଧରଣୀ ।
ବିନୋଦ-ବିହାର ଆମୋଦ-ଆବାସେ ଯାଇ
ପାରିଷଦ ସଙ୍ଗ ବିଜେ କଲେ ନରସାଇଁ
ଗାୟକ ମଦନମଣି
ରାଜବିନୋଦନେ ମିଳିଲା ସଘନେ
ନବ ଉଦ୍‌ବେଗ ଗଣି ।

ଜୋତ୍ସ୍ନା ରାତିର ଯୋଗ୍ୟ ଦାୟାଦ ଭୁଲ
ଫୁଟି ଉଠୁଥିଲା ଗନ୍ଧ-ମଧୁର ଫୁଲ ।
ମନ୍ଦ ମରୁତ ଗନ୍ଧ-ବିଭୂତି ଧରି
ବିଶ୍ୱେର ଅଦେଶେ ପ୍ରାଣ ଦେଉଥିଲା ଭରି ।
ଗାୟକ ମଦନମଣି
କଣ୍ଠ ଖୋଲିଲା କମ୍ପିତ କରି
ନୀରବ ନିଥର ରଜନୀ ।

ମୁଗ୍ଧ ଧିଆନେ ଚିତ୍ର ପିତୁଳା ସମ
ଶୁଣୁଥିଲେ ରାଜା ଶୁଣୁଥିଲେ ସଭାଜନ
ଶୁଣୁଥିଲେ ପୁଣି ବନର ପାଦପଲତା
ଅନ୍ତରେ ଲଭି ଅଭିନବ ମଧୁରତା ।
ମୁହୂର୍ତ୍ତେ ହରିଣୀ ଏକା
ଧୀରେ ଧୀରେ ପଦେ ଅଟା ପାଶେ ଆସି
ଛିଡ଼ା ହୋଇଗଲା ଦେଖ ।

କଳ କଣ୍ଠରେ ଲଳିତ ମଧୁର ଗାନ
ଦଣ୍ଡେକେ ଯେବେ ହୋଇଗଲା ଅବସାନ;
ଦେଖିଲୁ ଜନ ସେ ନୁହଇ ତାହାର ବନ,
ଶର ସମ କଲା ଝରତରେ ପଳାୟନ ।
ଉଚ୍ଛୁଳିଲା କଳରବ
ମଦନମଣିରେ ବନ୍ଦିତ ହେଲା
ସଙ୍ଗୀତ-ଗଉରବ ।

ମଉନ ନୃପତି ଆପଣା ଆସନ ଛାଡ଼ି
ମଦନମଣିର ଅନ୍ତିକେ ଗଲେ ଚାଲି,
କଣ୍ଠର ନବ ରତ୍ନହାରଟି କରେ
ପିନ୍ଧାଇ ଦେଲେ ମଦନମଣିର ଗଳେ ।
"ଧନ୍ୟ ତୁମର ଗଳା
ସେଇ ଗଳେ ଏବେ ମଣ୍ଡିତ ହେଉ
ଏ ମୋର ରତ୍ନମାଳା ।"

ଉତ୍ସୁକେ ଚାହିଁ କବି ବଳଦେବ ମୁଖେ
ବାଲୁକେଶ୍ୱର ଭାଷିଲେ ପରମ ସୁଖେ ।
"ଆହେ କବି, ତୁମେ ଦିବ୍ୟ ପ୍ରତିଭାବାନ
କରିଅଛ ପୁଣି ପ୍ରତିଭାର ସମ୍ମାନ ।
ଗୁଣୀରେ ଜାଣଇ ଗୁଣୀ
ଗୁଣୀର ଆଦର କରୁ ସିନା ଆମେ
ପରେ ତାର ଗୁଣ ଶୁଣି ।"

## ବାଇମୁଣ୍ଡି

ଦଶ ଶ' ବରଷ ତଳେ

ନ ଥିଲା ତ ଏଇ ପଥର ଉପର କାଠଯୋଡ଼ି-ନଈକୂଳେ ।
ବରଷା ଋତୁରେ କାଲ ସୁଅପରି ବନ୍ୟାର ଜଳ ଆସି,
ବରଷ ବରଷ କଟକ ପାଖଟା ଦେଇ ଯାଉଥିଲା ଗ୍ରାସି ।
ଆଖିର ପଲକେ ଚାଲି ଯାଉଥିଲା ଶହ ଶହ ଘର ଦ୍ୱାର
ନିର୍ମଳ କରି ଦେଉଥିଲା କେତେ ସାଙ୍କୁଳା ପରିବାର ।
ଶହ ଶହ ଲୋକ ଆଉ ଅଖିରୁ ଲୁହ ଦେଉଥିଲେ ବାହି,
କୂଳବୁଡ଼ା ସେଇ ବନ୍ୟା ଜଳରେ ମିଶି ଯାଉଥିଲା କାହିଁ ।
ଶହ ଶହ ଲୋକ ହାହା ବାହା ବନା କରୁଥିଲେ ଆହା ଆହା
ବନ୍ୟା ଜଳର ଘୋର ଘୋର ଘୋଟେ ହୋଇ ଯାଉଥିଲା ଛାହା ।
ସେତେବେଳେ ଏକା ହେ ବାଇମୁଣ୍ଡି ସେତେବେଳେ ଏକା ତମେ
କଟକର ସେଇ ଦୁର୍ଗତି କଥା ଭାବୁଥିଲ ମନେ ମନେ ।
ସଞ୍ଜ ସକାଳେ ବୁଲି ବୁଲି ତମେ କାଠଯୋଡ଼ି ନଈ ତଟେ
କେତେ କଳପନା ଲେଖି ଯାଉଥିଲ ଅମାନିଆ ହୃଦୁପଟେ ।

ଧନ୍ୟ ତୁମେ ହେ କବି,

ତୁମରି ପ୍ରାଣର ଛନ୍ଦ ଧରିଛି ପଥର ବନ୍ଧ ଛବି ।

ଉତ୍କଳିକା

୨୭

ହେ ଧନ ଏକାକୀ ଥିଲେ ବୋଲି ତୁମେ ସାହାସେ ବାନ୍ଧି ହୁଅ
ରାଜା ମଡ଼କର କେଶରୀ ଛାମୁରେ ନିର୍ଭୟେ ହେଲ ଠିଆ ।
ଜଣାଇଲ, "ମହାରାଜ,
ଗୋଟିଏ ଗୁହାରି କରିବା ପାଇଁ କି ବୁଦ୍ଧି ଅଛି ଆଜ ।

ଏଇ ବଡ଼ାନାସୀ କଟକ ଭିତରେ ପୁରୁଣା ଗୃହୀ ମୁଁ ଜଣେ
ଦୁଃଖ ଜଞ୍ଜାଳେ ମୋର ଧନ ବାନ୍ଧି ପଡ଼ିଥାଏ ଘର କଣେ ।
ସ୍ୱରୂପ ତ ଅଛି ପୁରା ଗୃହକୋଣେ ବରଷ ହୋଇଲାଣି ମୋର ।
କାଠଯୋଡ଼ା ପରି ମୋ ବଳ ବହପ ନେଲାଣି ବର୍ଷ-ଚୋର ।
ବରଷ ବରଷ ଧରି
ଏଇ ମୋର ଧନେ ନଜରରେ ମୁହିଁ କେତେ କେତେ ନଛୋଡ଼ି !

ନଈର ଏ ପଟେ ପ୍ରତି ବରଷ ମୁଁ କରୁଛି ଧାନ୍ଦୁତ ଗୃହ
ସୁଖରେ କିନ୍ତୁ ଖାଇବାକୁ ମୁଠେ ମିଳେ ନାହିଁ ବାରମାସ !
ସବୁ ତ ଖାଉଛି ସବୁ ତ ନଉଛି ଏଇ କାଠଯୋଡ଼ୀ ନଈ
ବରଷଟାଯାକ ଗଡ଼ି ଗଡ଼ି ଖାଲି ନାଳିଆ ହୋଇଛି ମୁହିଁ ।
କିନ୍ତୁ ମଣିମା ସେଇଥି ସକାଶେ ନାହିଁ ମୋର ଜମା ଦୁଃଖ
ନରଧଉ ଖାଲି ଗୋଟିଏ ଚିନ୍ତା କାଟୁଛି ଏ ମୋର ବୁକ ।
ଧନ ତ ମୋହର ବଢ଼େଣା ନାହିଁ ଆଜି ଏଇ ଯେ ସରକା ଆସି
ଭାବୁଛି କେମିତି କଟକ ବାଲିଆ ରହିବେ କଟକବାସୀ ।

ଓଡ଼ିଶା ଦେଶର ମଥାମଣି ହୋଇ ବସିଥିଲେ ଯେ ମନ୍ଦିର
ବସାଇ ଥିଲେ ଯେ ଆମ ବୃଦ୍ଧା ରାଜା ସବୁ ହେବ ନିଷ୍ଫଳ ।
ବରଷ ବରଷ ବଳି ପଡ଼ୁଛି ତ ବନ୍ୟାର ମହାଦାଉ
ଏଇ ବଢ଼ାନାଶୀ ଜହ୍ନିକି ମନ୍ଦିର କେମିତି ରହିବ ଆଉ ?
ଧର୍ମର ଅନ୍ଧକାର
କାତର ବୁକେ ଏ ନିଜେ ମାଗୁଛି ଦୁଃଖର ପ୍ରତିକାର ।"

ବିସ୍ମିତ ରାଜା ସସ୍ମିତ ମୁଖେ ମନମୟୁରେ କି ଭାବ
କହିଲେ, "ବୃଦ୍ଧ, ଗୁହାରି ଶୁଣିଛି ଇଏ ତ ତୁମର ଦାବୀ ।
ପରଜା ସକାଶେ ଦାୟ ମୁଁ ପ୍ରଜା ବାଧ ମୋ ସରକାର
ତମ ହିତଲାଗି କରାହେବ ସବୁ ଯେତେ ଯାହା ଦରକାର ।
ଏକା ଏକା ଆସି ଜଣାଇଛ ତମେ ରାଜ୍ୟର ହିତ ପାଇଁ
ବାକ୍ୟ ଦେଉଛି ତମର କଥା ତ ଅନ୍ୟଥା ହେବ ନାହିଁ ।
କାଠଯୋଡ଼ି କୂଳେ ବନ୍ଧାଇ ଦେବି ପଥର ବନ୍ଧ ଏକ
ଯୁଗ ଯୁଗ ଧରି ରଖିବ ତାହା ଏ କଟକ ସହର ଟେକ ।"

ମହାରାଜା ଯହୁଁ ଜନର ସମ୍ମୁଖେ କହିଦେଲେ ପରକାଶ
ମଳିନ ଜନର ଶୁଷ୍କ ଅଧରେ ଚହଟି ଉଠିଲା ହାସ,
ଫୁଟିଲା ତା ସାଥେ ଭାଷା,
"ସେତିକି ମୋହର ଇଚ୍ଛା ହେ ରାଜା, ସେତିକି ମୋହର ଆଶା ।"

ରାଜାର ଆଦେଶେ ଅଳପ ଦିବସେ ରାଜକୋଷ ହେଲା ପୂର
ହଜାର ହଜାର ରାଜ ପଥୁରିଆ ମୂଲିଆ ହୋଇଲେ ଠୁଳ ।
ମୂଲ ଲାଗି ହାୟ୍ ଝାଳ ଦେଇଗଲେ କେତେ ନିଜ ପ୍ରାଣଦାନ
କାଠଯୋଡ଼ି କୂଳେ ଯୋଡ଼ି ଦେଇଗଲେ ପଥର ଖଣ୍ଡଟିମାନ ।
**ଅଜ ଅଦ୍ଧା** ଦିନ ରାତି
ଠିଆ ହୋଇଅଛି ପଥର-ବନ୍ଧ ବନ୍ୟାକୁ ବୁକୁ ପାତି !

**ଅହେ** ମରକତ ଓଡ଼ିଶା ରାଜନ
**ଅହେ** ନାମହୀନ ମଜ୍‌ଦୁର୍‌ଗଣ
ସଭିଏ ବନ୍ଦନୀୟ,
ପ୍ରଥମେ କନୁ ହେ ବାଇମୂର୍ତ୍ତି, କବିର ଅର୍ଘ୍ୟ ନିଅ ।

— — ✱———

## ମଣି-କାଞ୍ଚନ ଯୋଗ

ଜୈତ୍ର ପତାକା ଉଡ଼ାଇ ଯେସନ
ମୁକ୍ତ ସମୀର ଲହରେ,
କାଞ୍ଚିବିଜୟୀ ପୁରୁଷୋତ୍ତମ
ଫେରିଲେ ଆପଣା ନଅରେ ।

ମନ୍ତ୍ରୀରେ ଡାକି ଦର୍ପେ ଭାଷିଲେ
"କାଞ୍ଚି ହୋଇଛି ଚୂର୍ଣ୍ଣ,
ତଥାପି ମୋହର ମରମ ତଳର
ବାସନା ହୋଇନି ପୂର୍ଣ୍ଣ ।

ଚଣ୍ଡାଳ ରାଜା ବୋଲି ମୋତେ ସେ ଯେ,
କରିଥିଲା ଅପମାନନା
ଅଦ୍ୟାପି କାହିଁ ପୂର୍ଣ୍ଣ ହୋଇନି
ସେଇ ପ୍ରତିଶୋଧ କାମନା ।

ଦୁଃସହ ସେଇ ଅଗ୍ନେୟ ଶିଖା
ଚିର ଅବିନାଶ ଧରମେ
ହୃତ୍ପଦ୍ମର୍ ହୋଇ ଗଲି ଦିବସ
ଜଳୁଛି ମୋହର ମରମେ ।

ବନ୍ଦୀ କରି ମୁଁ ଆଣିଅଛି ଏ ଯେ
ସୁନ୍ଦରୀ ରୂପଧନ୍ୟା
ଅତି ଅଭାଗିନୀ ରୂପାମ୍ବିକା ଏ
କାଞ୍ଚିରାଜାର କନ୍ୟା ।

ଚଣ୍ଡାଳବର ଅନୁସନ୍ଧାନ
ଅର୍ପ ଏହାକୁ ତୂର୍ଣ୍ଣ,
ମରମ ତଳର ବାସନା ମୋହର
ତେବେ ଯାଇ ହେବ ପୂର୍ଣ୍ଣ ।"

"ଯେ ଆଜ୍ଞା" କହି ମୃଦୁ କମ୍ପନେ
ଥରାଇ କଣ୍ଠ-ତନ୍ତ୍ରୀ
ରୂପାମ୍ବିକାରେ ସଙ୍ଗତେ ନେଇ
ବିଦାୟ ନେଲେ ମନ୍ତ୍ରୀ ।

ନୀଳାଚଳେ ଧାମେ ସେ ବରଷ ଯେବେ
ହେଲା ଗୁଣ୍ଡିଚା ଯାତ୍ରା
ରାଜପଥ ପରେ ଉଛୁଳି ପଡ଼ିଲା
ଉତ୍ସବ-ଶିଖା-ମାଳା ।

ରଥ ପରେ ମହାପ୍ରଭୁ ମେଲିଥିଲେ
ମହାପୁଣ୍ୟର ପସରା
ଚଣ୍ଡାଳବେଶେ ଉତ୍କଳଭୂପ
କରୁଥିଲେ ଛେରାପହଁରା ।

ମନ୍ତ୍ରୀ ସହସା ରାଜସମ୍ମୁଖେ
ଛିଡ଼ା ହୋଇ ନବ ରଭସେ
ଜଣାଇଲେ ଧୀର ନିର୍ଭୀକ ବାଣୀ
ଅନ୍ତରଭରା ସାହସେ ।

"ଜଗନ୍ନାଥର ଚଣ୍ଡାଳ ତୁମ୍ଭେ
ଜଗନ୍ନାଥର ସେବକ,
ଧରାତଳେ ତୁମ୍ଭ ଚଣ୍ଡାଳବର
ଭାବୁଛି ମୋହର ବିବେକ ।

ଉତ୍କଳିକା

୭୨

ରାଜାଦେଶ ଅଳ୍ପ ପୂର୍ଣ୍ଣ ହୋଇଚ
ଅଉ ନାହିଁ ମୋର ଭାବନା;
କାଞ୍ଚିଜେମା ଏ ରୂପାମ୍ବିକାରେ
ଘେନା ହେଉ ଏଇ ଯାଚନା ।"

ନିର୍ବାକ ରାଜା ଅନାଇ ରହିଲେ
ମୁଗ୍‌ଧ ଚକିତ ଚକ୍ଷେ
କାଞ୍ଚିଜେମାର ବରଣମାଳ୍ୟ
ଶୋହିଲା ନଗନ ବକ୍ଷେ ।

ମନ୍ତ୍ର ଆରବେ ମୂର୍ଚ୍ଛି ଉଠିଲା
ଜନତା କଣ୍ଠ- ତନ୍ତ୍ରୀ
-"ଜୟ ଅଜ ଜୟ ରାଜଦମ୍ପତ
ଜୟ ଜୟ ରାଜମନ୍ତ୍ରୀ ।"

---

ଇଙ୍ଗିତ—

## ବିଶ୍ୱ-ଜୀବନ-ପଥେ

କଲିକତାଠାରେ ବିଷୟବସ୍ତୁ ଷୋଡ଼ଶ ବାର୍ଷିକ "ସମାଜ" ଗୋପବନ୍ଧୁ ସ୍ମୃତିସଂଖ୍ୟାର "ଦୁଇଟି ଦିନର କଥା"ରୁ ଗୃହୀତ । ତାହା ଗୋପବନ୍ଧୁଙ୍କ ଜୀବନର ୧୯୦୪ର ଘଟନା ।

## ମରନାହିଁ ସେ ତ ମରଣ-ଜୟୀ

ମରଣଜୟୀ 'ସନାତନ' ଆଜି ଆଉ ଉତ୍କଳରେ ଅପରିଚିତ ନୁହନ୍ତି । ସନାତନ କଥାଟି ଦ୍ୱିଜେନ୍ଦ୍ରନାଥ ନିୟୋଗୀଙ୍କ 'True tales of Indian life' ପୁସ୍ତକରେ ପ୍ରଥମେ ପ୍ରକାଶିତ ହୋଇଥିଲା ।

## ଭାଇ

ସଂକ୍ଷିପ୍ତ ଗଳ୍ପଭାଗ 'କୋଶଳ ଇତିହାସ' ରୁ ଗ୍ରହଣ କରିଅଛୁ ।

## ବୀରରାଣୀ ଶୁକଦେଈ

୬ ମୃତ୍ୟୁଞ୍ଜୟ ରଥଙ୍କର 'ନାରୀଦର୍ପଣ' ଓ 'ବାଙ୍କି-ଇତିହାସ'ରୁ ବିଷୟବସ୍ତୁଟି ଗୃହୀତ ।

## ବିସର୍ଜନ

ରାଧାନାଥଙ୍କ ଗ୍ରନ୍ଥାବଳୀରେ 'ପ୍ରତାପରୁଦ୍ର ଦେବ' ନାମରେ ଗୋଟିଏ କ୍ଷୁଦ୍ର କବିତା ଅଛି । ସେ କବିତାରେ ତାରଣୀର ଚରିତ୍ର ବଡ଼ ଚିତ୍ତାକର୍ଷକ ଓ ଉଜ୍ଜ୍ୱଳ—ତାହାହିଁ ମୋର କବିତାର କଳେବର ।

## ପ୍ରଭାବତୀର ଅଭିଯାନ

କବିବନ୍ଧୁ ଗୋଦାବରୀଶ ମହାପାତ୍ରଙ୍କ 'କୀର୍ତ୍ତିମାଳା'ରେ ଏ କଥାଟି "ଧଳଭୂମି ରାଜକନ୍ୟା" ନାମରେ ପ୍ରକାଶିତ ହୋଇଅଛି ।

## ମଦନମଣିର ଦାନ

ପଣ୍ଡିତ କୁଳମଣି ଦାଶ ତାଙ୍କର ସମ୍ପାଦିତ 'କବିସୂର୍ଯ୍ୟ ଗ୍ରନ୍ଥାବଳୀ'ର ଭୂମିକାରେ ଗାୟକ ମଦନମଣିର ନାମୋଲ୍ଲେଖ କରିଅଛନ୍ତି । ତାକୁଇ କେନ୍ଦ୍ର କରି ଏ ଗଳ୍ପର ସୃଷ୍ଟି ।

## ମଣିକାଞ୍ଚନ ଯୋଗ

କାହାଣୀରେ ଚଳି ଆସୁଅଛି, ପଦ୍ମାବତୀ କାଞ୍ଚିଦେଶର ରାଜଜେମା, ପୁରୁଷୋତ୍ତମଙ୍କ ପତ୍ନୀ । ମାତ୍ର 'ସରସ୍ୱତୀ-ବିଳାସ' ଗ୍ରନ୍ଥରୁ ଜଣାଯାଏ ପଦ୍ମାବତୀ ପୁରୁଷୋତ୍ତମଦେବଙ୍କ ପୁତ୍ର ପ୍ରତାପରୁଦ୍ରଙ୍କର ପତ୍ନୀ । କର୍ଣ୍ଣାଟ ରାଜକୁମାରୀ ରୂପାମ୍ବିକା ପ୍ରତାପରୁଦ୍ରଙ୍କ ମାତା । ତେଣୁ ମୁଁ 'ପଦ୍ମାବତୀ' ପରିବର୍ତ୍ତରେ 'ରୂପାମ୍ବିକା' ନାମ ରଖିଅଛି ।

---